# ଆରତି

ଲେଖିକା—ବସନ୍ତ କୁମାରୀ ଦେବୀ

କଟକ ବୁକ୍ ଏମ୍ପୋରିୟମ ଆନୁକୂଲ୍ୟରେ
ପ୍ରକାଶିତ

ପ୍ରଥମ ସଂସ୍କରଣ

ସୋଲ୍ ଏଜେଣ୍ଟ୍




ମୂଲ୍ୟ ଟ ୧ । ଏକଟଙ୍କା ଚାରିଅଣା ମାତ୍ର

Digitized by srujanika@gmail.com



# ଉତ୍ସର୍ଗ

ଉତ୍କଳ ଭାରତୀ

ଚରଣେ—

। ଇତି ।

ବନୀତା ସେବକା

ବସନ୍ତ କୁମାରୀ

Digitized by srujanika@gmail.com

# ପଦେ କଥା

ତିନି ବର୍ଷ ତଳେ, ଅର୍ଥାତ୍ ମୋର ପନ୍ଦର ବର୍ଷ ବୟସରେ ମୁଁ ଉପନ୍ୟାସ ଲେଖିବାକୁ ଆରମ୍ଭ କରିଥିଲି । 'ଆରତି' ମୋର ପ୍ରଥମ ଉପନ୍ୟାସ । ସେ ହେତୁ ଅନେକ ତ୍ରୁଟି ସେଥିରେ ରହିଯାଇ ଥାଇପାରେ । ସହୃଦୟ ପାଠକ ପାଠିକାଙ୍କୁ ଅନୁରୋଧ ଯେପରି ସେମାନେ ସେ ତ୍ରୁଟିଗୁଡ଼ିକ ପାଇଁ କ୍ଷମା କରନ୍ତି ।

ସାହିତ୍ୟ କ୍ଷେତ୍ରରେ ଯାହାଙ୍କୁ ମୁଁ ଗୁରୁରୂପେ ବରଣ କରି ନେଇଛି, ଯାହାଙ୍କ ଉତ୍ସାହ ଓ ପ୍ରେରଣାରେ ଅନୁପ୍ରାଣିତ ହୋଇ ଜୀବନରେ ସାହିତ୍ୟ ସାଧନା ଆରମ୍ଭ କରିଥିଲି, ସେହି ମୋର ଓଡ଼ିଶା—ଉଭୟ-ଭାଷା-ପ୍ରବୀଣ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କ ନିକଟରେ ମୁଁ ଚିରକୃତଜ୍ଞ । ଦୁଃଖର କଥା ଛାପାରେ କେତେକ ଭୁଲ ରହି ଯାଇଅଛି । ପରବର୍ତ୍ତୀ ସଂସ୍କରଣରେ ଆବଶ୍ୟକ ସଂଶୋଧନ କରାଯିବ । ଇତି ।

ଶ୍ରୀମତୀ ବସନ୍ତ କୁମାରୀ ଦେବୀ

Digitized by srujanika@gmail.com

# ଆରତି



—ଏକ—

ଅରୁଣ ଆଉ ପ୍ରଣତି—ଗୋଟିଏ ବୃନ୍ତରେ ଯେପରି ଦୁଇଟି ଫୁଲ । ଜଣେ ତୀବ୍ର ଉଜ୍ଜ୍ୱଳ ରକ୍ତ ଗୋଲାପ, ଆଉ ଜଣେ ଶାନ୍ତ ସ୍ନିଗ୍ଧ ବନ-କୁସୁମ । ପ୍ରତିଦିନ ସକାଳ ଦଶଟା ବେଳକୁ ପାଠ୍ୟ ପୁସ୍ତକ ଧରି ଦୁଇଜଣ ଯାକ ଧୀରେ ଧୀରେ କଲେଜ୍ ଆଡ଼କୁ ଅଗ୍ରସର ହୁଅନ୍ତି । ରାସ୍ତାର ବାଟୋଇ ଘଡ଼ିଏ କାଳ ମୁଗ୍‌ଧ ହୋଇ ଚାହିଁ ରହେ ସେମାନଙ୍କ ଆଡ଼କୁ ସ୍ଥାନ, କାଳ, ପାତ୍ର ଭୁଲି ।

ଅରୁଣ କହେ, "ଦେଖ୍ ପ୍ରଣତି, ଏ ଲୋକଗୁଡ଼ାକ କି ଅଭଦ୍ର । ଆମେ ଯେ ଭଦ୍ରଘରର ଝିଅ, ଏମାନେ ବୋଧହୁଏ ତା'ଭୁଲି ଯାଉଛନ୍ତି । ମୋର ସମୟ ସମୟରେ କଣ ଇଚ୍ଛା ହୁଏ ଜାଣିଛୁ ? ଠିକ୍ ଏପରି ଯେତେବେଳେ ଚାହୁଁଥିବେ, ସେତେବେଳେ ଗୋଡ଼ରୁ ଚଟିଟା କାଢ଼ି ନେଇ ଗାଲରେ ଦୁଇ ପାହାର ବସାଇ ଦିଅନ୍ତି ! ଅଭଦ୍ରଗୁଡ଼ାକ ଠିକ୍ ବୁଝିପାରନ୍ତେ ତା' ହେଲେ —"

Digitized by srujanika@gmail.com

ପ୍ରଣବ ବ୍ୟସ୍ତ ହୋଇ କହେ, "ଛିଃ, ଛିଃ ! ଅରନ୍ଧ, ତୁ ରାସ୍ତା-ଟାରେ ଏଡ଼େ ପାଟିରେ କଥାବାର୍ତ୍ତା କରୁଛୁ ? ଲୋକଗୁଡ଼ାକ ଶୁଣିଲେ କଣ ଭାବବେ କହିଲୁ ! ଅଚ୍ଛା, ଚାହିଁଲେ କଣ ଦୋଷ ? ସୌନ୍ଦର୍ଯ୍ୟକୁ ନରେଖି ଚାହିଁବାକୁ ସମସ୍ତଙ୍କର ତ ଇଚ୍ଛା ହୁଏ, ଆଉ ସୌନ୍ଦର୍ଯ୍ୟ ଦର୍ଶନରେ ଆନନ୍ଦ ମଧ୍ୟ ମିଳେ । ସୁନ୍ଦର ଜିନିଷଟିଏ ଦେଖିଲେ ତୁ କଣ ଚାହିଁ ନ ଥାଉ ? ଏମାନଙ୍କର କି ଦୋଷ ?"

ଅରନ୍ଧ ବିରକ୍ତ ହୋଇ କହିଉଠେ—"ପ୍ରଣବ, ତୋର ଏଇଟା ଗୋଟାଏ ବଡ଼ ଦୋଷ; ଅଳପ ଟିକିଏ କଥାରେ ତୁ ଗୋଟେ ଲମ୍ବାଟ ବକ୍ତୃତା ଦେଇ ବସୁ ! ଚାଲ୍, ସିଆଡ଼େ ଡେରି ହୋଇଯିବ । ଟିକେ ଚଞ୍ଚଳ ପାଦ ପକାଇ ଚାଲ୍—ବାଃ, ତୋର ଏ ଗଜେନ୍ଦ୍ର ଗମନଟା ମୋତେ ମୁଁ ସହିପାରେ ନା । ସବୁବେଳେ ଏପରି ଧୀରେ ଧୀରେ ଚାଲିବାଟା ତୋର ଗୋଟାଏ ମସ୍ତ ବଡ଼ ଦୁରଭ୍ୟାସ—"

ପ୍ରଣବ ହସି ହସି କହେ, "ଅରନ୍ଧ, ଶାସ୍ତ୍ର କଣ—ପୁରାଣ କଣ—କାବ୍ୟ କଣ-ଉପନ୍ୟାସ-କଣ-ସବୁଥିରେ ଲେଖା ହୋଇଛି ନାରୀର ସବୁ-ଠାରୁ ସୁନ୍ଦର ଗଜ ଗମନଟା । ସେଇଟା ଯେ ନାରୀର ସୌନ୍ଦର୍ଯ୍ୟର ଗୋଟାଏ ପ୍ରଧାନ ଅଙ୍ଗ ! କଥାରେ ନାରୀକୁ ବର୍ଣ୍ଣନା କରାଯାଏ ଗଜ-ଗମନା, ମରାଳଗମନା, ଆଉ—"

ଅରନ୍ଧ ଅସହିଷ୍ଣୁ ହୋଇ ତୀବ୍ର ସ୍ୱରରେ କହି ଉଠେ—"ଓଃ, ସେତିକି, ସେତିକି—ଆଉ କହନା, ଡେରି ହୋଇଛି ! ତୋର ଏ କାବ୍ୟ ଭାଷା ଶୁଣିଲେ ମୋର ହାଡ଼ ଜଳିଯାଉଛି । କୁଆଡ଼େ ଜଲ୍ଦ ଜଲ୍ଦ ପାଦ ପକାଇ ଚାଲିବୁ—ନା ଖାଲି ଅନ୍ତରରୁ ଭାବ ଉଚ୍ଛୁଳି ପଡ଼ୁଛି !"

Digitized by srujanika@gmail.com

ଅରକ୍ଷିତର ସ୍ୱଗ ଦେଖି ପ୍ରଶାନ୍ତ ମନେ ମନେ ଖୁବ କୌତୁକ ଅନୁଭବ କରେ । ଶୀରବରେ ହସି ହସି କହେ, "ଆହା ! ଏ ଯୁଗରେ ଷଡ଼ ଶ୍ରେଷ୍ଠ ସ୍ଥାନ ପାଇଛି ସାହିତ୍ୟ ! କବିଭାଷାର ଅଦର ସବୁଠାରୁ ବେଶୀ ଯେ !"

ଅରକ୍ଷିତ ବାଧା ଦିଏ—"ଓଃ, ଅନ୍ତ ଥରେ ବକ୍ତୃତା ଦେଇ ବସିଲୁ ଟି । ଆଜି ଅଭ କଲେଜ ଯାଇ ହବନ । ଦେଖ୍ ପ୍ରଶାନ୍ତ, ଦିନକୁ ଦିନ ତୁ ବେଶୀ ସେଣ୍ଟିମେଣ୍ଟାଲ୍ ହୋଇଯାଉଛୁ । ବେଶୀ ଭବ-ପ୍ରବଣ ହୋଇଗଲେ ବଡ଼ କଷ୍ଟ—ହଉ ଦେ—ତୁ ଅସିବୁ ତ, ଆ—ମୁଁ ଏପରି ବୃଥା ସମୟ ନଷ୍ଟ କରିପାରିବ ନାହିଁ; କାରଣ ମୁଁ ବସ୍ତୁତଃ ବାସ୍ତବବାଦୀ—ମୋ ପାଖରେ ଏ ସବୁ ଭାବପ୍ରବଣତାର ଉଚ୍ଛ୍ୱାସ ଚଳିବ ନା—" ଏହା କହି ସେ ମଜା ଦେଖିବାକୁ ଶୀଘ୍ର ଶୀଘ୍ର ପାଦ ପକାଇବାକୁ ଆରମ୍ଭ କରେ ।

ଅରକ୍ଷିତର ଦ୍ରୁତ ଗତି ସହିତ ପା'ର ନ ପାରି ପଛରୁ ପ୍ରଶାନ୍ତ ମିନତି-ଭରା କଣ୍ଠରେ କହେ, "ଏ ଅରକ୍ଷିତ, ଟିକେ ରହ—ବାପା-ଲୋ ! ତୋ'ର ଘୋଡ଼ା ଚାଲି ସଙ୍ଗେ ମୁଁ ଚାଲି ପାରୁନି । ମୋ ଗୋଡ଼ କଣ ହୋଇ ଯାଉଛି । ଅଚ୍ଛା, ଅଉ କେବେ ବାଜେ କଥା କହିବି ନା । ତୋ ଗୋଡ଼ ଧରୁଛି, ଟିକେ ରହ—"

ହସି ହସି ଅରକ୍ଷିତ ଠିଆ ହୋଇଯାଏ । ପ୍ରଶାନ୍ତ ତା ସଙ୍ଗେ ମିଶିଲା ପରେ ଦୁହେଁ ଅଉ ଥରେ ଚାଲନ୍ତି ପୂର୍ବପରି ହାସ୍ୟ କୌତୁକ କରୁ କରୁ—ଏ ଦୁଇଜଣ କଲେଜ୍‌ରେ ପ୍ରବେଶ କଲାମାତ୍ରେ ଛାତ୍ରମାନଙ୍କର ଚକ୍ଷୁ ଉଜ୍ଜ୍ୱଳ ହୋଇଯାଏ । କିନ୍ତୁ କାହାପ୍ରତି ଦୃଷ୍ଟିପାତ ନ କରି ଅରକ୍ଷିତ ଅଉ ପ୍ରଶାନ୍ତ କ୍ଲାସ୍ ରୁମ୍‌ରେ ପଶିଯାନ୍ତି ।

Digitized by srujanika@gmail.com

କିଶୋରୀ ଦୁଇଟିଙ୍କୁ ଦେଖି ଅନେକେ ଭାବନ୍ତି, ବୋଧହୁଏ ସମଜ ଭଗ୍ନୀ ହୋଇଥିବେ "କିନ୍ତୁ ଦୁଇ ଜଣ ପରସ୍ପର ଭଉଣୀ ନୁହନ୍ତି, ଉପରନ୍ତୁ ବିଭିନ୍ନ ଘରର କନ୍ୟା ସେମାନେ । ଆରତି ଶୈଶବ କାଳରୁ ପିତୃମାତୃହୀନା । ଆଉ ଶାନ୍ତି ପିତୃହୀନା ପ୍ରଣତି ଅଭାଗିନୀ ମାତାଙ୍କର ଏକମାତ୍ର ଆଦରଣୀୟା କନ୍ୟା । ସନ୍ତାନହୀନ କକେଇଙ୍କ ନିକଟରେ ଆରତି ଥାଏ । କକେଇ, ଖୁଡ଼ୀ ଆରତିକୁ ନିଜର ସନ୍ତାନ ପରି ସ୍ନେହ କରୁଥିଲେ । ସେହେତୁ ପିତୃମାତୃହୀନା ଆରତିର ସ୍ନେହର ଅଭାବ ନ ଥିଲା । ନିଜେ ସେ ମଧ୍ୟ ଜାଣି ନ ଥିଲା ଯେ ତାର ଜନ୍ମ ପଛରେ ଗୋଟାଏ ଦୁଃଖମୂଳକ କାହାଣୀ ନିହିତ ଅଛି ।

ପନ୍ଦର ଷୋହଳ ବର୍ଷ ତଳର କଥା—ଏକ ଜନନୀର ଜଠରରୁ ଦୁଇଜଣ ଯାକ ଜନ୍ମିଥିଲେ ମଧ୍ୟ ଆରତିର କକେଇ ରାମବାବୁ ଅର୍ଥର ମୋହରେ ଅନ୍ଧ ହୋଇ ଜ୍ୟେଷ୍ଠ ଭ୍ରାତା ସୁରେନ୍ଦ୍ରଙ୍କୁ ହେୟ ଜ୍ଞାନ କରି ଅଲଗା ହୋଇ ଯାଇଥିଲେ ତାଙ୍କଠାରୁ । ସୁରେନ୍ଦ୍ର ଥିଲେ କୋମଳ ପ୍ରକୃତିର ମଣିଷ, ଆଉ ଉଚ୍ଚ ଶିକ୍ଷିତ ବି ନ ଥିଲେ । ଜମି ବୁଢ଼ା ଧୁଳା କରି ଉପାର୍ଜିତ ଅର୍ଥରେ ରାମବାବୁଙ୍କୁ ଉଚ୍ଚ ଶିକ୍ଷିତ କରି ମଣିଷ କରିଥିଲେ ସେ । ଆଉ ତାଙ୍କ ପାଇଁ ଶିକ୍ଷିତା କନ୍ୟାଟିଏ ମଧ୍ୟ ଯୋଗାଡ଼ କରି ଦେଇଥିଲେ । ପଲ୍ଲୀ-ଗାଁର ବାୟୁମଣ୍ଡଳ ସଙ୍ଗେ ସହରର ବାୟୁମଣ୍ଡଳ ଖାପ ଖାଏ ନା । ସେହିପରି ଶିକ୍ଷିତ, ଅଶିକ୍ଷିତଙ୍କ ମଧ୍ୟରେ ବି ଆନ୍ତରିକ ଭାବ ଆସି ପାରେ ନାହିଁ । ଶିକ୍ଷିତ, ଅଶିକ୍ଷିତ ସଙ୍ଗରେ ଚଳିପାରେ ନା । ଏଇଟା ଗୋଟାଏ ସାଧାରଣ କଥା ହେଲେ ମଧ୍ୟ, ସରଳ ସୁରେନ୍ଦ୍ର ଚରମ ଆଘାତ ପାଇଥିଲେ ଏ ହେତୁରୁ । ଜମି-ବାଡ଼ି ଅଲଗା କରି ନେଇ ରାମବାବୁ କଟକରେ ଘର କରି ରହିଲେ । ଓକିଲାତି କରି [illegible] ସମ୍ପୋଣ୍ଡରେ ଅର୍ଥ ଉପାର୍ଜନ କଲେ । ଏଣେ [illegible] ଜମିବାଡ଼ି

Digitized by srujanika@gmail.com

ନେଇ ସୁରେନ୍ଦ୍ର ମନଦୁଃଖରେ କାଳ କଟାଉଥିଲେ । ଈଶ୍ୱର ଯାହାଙ୍କୁ ଦୁଃଖ ଦିଅନ୍ତି, ଅଳ୍ପ ଦୁଃଖ ଦିଅନ୍ତିନାହିଁ । ଦୁଃଖର ବୋଝଟା ଏକା ମୁଣ୍ଡରେ ଲଦା ନ ହେଲେ ତାଙ୍କ ମନ, ବୋଧହୁଏ, ତୃପ୍ତ ହୁଏ ନାହିଁ । ସୁରେନ୍ଦ୍ରଙ୍କର ଭ୍ରାତୃ-ବିଚ୍ଛେଦ ଦୁଃଖ ପରେ ଆସିଲା ସନ୍ତାନବିଚ୍ଛେଦ-ଦୁଃଖ । ଗୋଟିକ ପରେ ଗୋଟିଏ-ଚାରୋଟି ସନ୍ତାନ ଜନ୍ମି ବାହୁଡ଼ିଲେ । ରୁଗ୍ଣା ପତ୍ନୀଙ୍କ ଲାଗି ତାଙ୍କୁ ଜମି ବନ୍ଧା ପକାଇବାକୁ ପଡ଼ିଲା । ଅଭାବ, ଅନାଟନ, ରୋଗ-ସବୁ ଏକାସଙ୍ଗେ ଝଡ଼ ପରି ଯେତେବେଳେ ମାଡ଼ି ଆସିଥିଲା, ସେହି ସନ୍ଧି-କ୍ଷଣରେ ଅରଢ ଅଭିଶପ୍ତ ଭାଗ୍ୟ କିନ୍ତୁ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ନେଇ ଜନ୍ମ ଲଭିଥିଲା । ରୁଗ୍ଣା ଜନନୀ ଅତୃପ୍ତ ପ୍ରାଣରେ ବିଦାୟ ନେଲେ ଚିରକାଳ ପାଇଁ । ଏହି ଶିଶୁଟିର ଏକାନ୍ତ ମାୟାରେ ଜଡ଼ିତ ହୋଇ ସମସ୍ତ ଲଜ୍ଜା-ଅଭିମାନ ଏଡ଼ି ଶେଷ ମୁହୂର୍ତ୍ତରେ ସୁରେନ୍ଦ୍ର ସେହି ଅକୃତଜ୍ଞ କନିଷ୍ଠ ଭ୍ରାତାକୁ ଡକାଇ ପଠାଇ ଥିଲେ ଖାଲି ଏହି କୋମଳ, ସୁନ୍ଦର ମୁହଁଟିକୁ ବଞ୍ଚାଇ ରଖିବାପାଇଁ । ଶେଷ ମୁହୂର୍ତ୍ତରେ ସମବାରୁ ଅକୃତଜ୍ଞ ହୋଇ ନ ଥିଲେ— ସେହି ଅପୂର୍ବ ଦାନ ଗ୍ରହଣ କରିଥିଲେ, ଆଉ ଅନୁତାପ କରିଥିଲେ ମଧ୍ୟ । ପରମ ତୃପ୍ତିରେ ସୁରେନ୍ଦ୍ର ଚକ୍ଷୁ ମୁଦ୍ରିତ କରିଥିଲେ ।

× × × ×

ପ୍ରଶାନ୍ତର ମା ଉଷା ଦେବୀ ଓ ଅରଢର ଖୁଡ଼ୀ ଉମା ପରସ୍ପର ବନ୍ଧୁତ୍ୱ ସୂତ୍ରରେ ଆବଦ୍ଧ ଥିଲେ । ପ୍ରଶାନ୍ତ ଯେଉଁ ଦିନ ଉଷାଙ୍କ କୋଳକୁ ଆସିଲା, ସେହିଦିନ ସନ୍ତାନହୀନା ଉମାଙ୍କ ମନ ଦୁଃଖରେ ଭାରାକ୍ରାନ୍ତ ହୋଇଗଲା । ପ୍ରଶାନ୍ତଙ୍କୁ ଦେଖି ସେ କହୁଥିଲେ, "ତାଙ୍କର ଯଦି ଏପରି ଗୋଟିଏ ଶିଶୁ ହୁଅନ୍ତା ! ଭଗବାନ୍ କଣ ଦେବେ କି ?"

Digitized by srujanika@gmail.com

ଈଶ୍ୱର ଦେଲେ—ଅବଶ୍ୟ ତାଙ୍କର ନିଜର ନୁହେଁ । ସ୍ୱାମୀ ସେଦିନ କମଳକୋରକ ସଦୃଶ ଶିଶୁ ଅରଢକୁ ଆଣି ଅଶ୍ରୁଭରା ନୟନରେ କହିଲେ, "ଉମା, ଦେଖ—ଆଜି ତୁମପାଇଁ କଣ ଆଣି ଦେଇଛୁ ।" ଶିଶୁଟିର ଅନିନ୍ଦ୍ୟ ସୁନ୍ଦର ଶୋଭାରେ ମୋହିତ ହୋଇ ଉମା କହିଉଠିଲେ—"କେଉଁଠାରୁ ଆଣିଲ ?"

ରୁଦ୍ଧକଣ୍ଠରେ ସ୍ୱାମୀବାବୁ ବର୍ଣ୍ଣନା କଲେ କରୁଣ କାହାଣୀଟା ।

ଉମା ହତବାକ୍ ହୋଇଯାଇଥିଲେ—ଶିଶୁଟି ଏ ସମୟରେ କାନ୍ଦି ଉଠିଲା । ଉମାଙ୍କ ମାତୃ-ହୃଦୟ ଉଚ୍ଛୁଳି ଉଠିଲା । ସେ ଅଶେଷ ସ୍ନେହରେ ଶିଶୁଟିକୁ ସ୍ୱାମୀଙ୍କ ହସ୍ତରୁ ନିଜ ବକ୍ଷ ଉପରକୁ ଟାଣି ଆଣିଲେ । ଅବୋଧଶିଶୁ—ମାତୃବକ୍ଷସ୍ଥଳ ଅନୁଭବ କରି ତୁନି ହୋଇଗଲା । ଅତୀତର ତର ସମସ୍ତ ଗ୍ଲାନି ମନରୁ ପୋଛି ଦେଇ ଉମା ଶିଶୁର ଛୋଟ ସୁନ୍ଦର ମୁହଁଟିକୁ ଅଧୀର ଚୁମ୍ବନ ଦେଇ, ଆରକ୍ତ କରିଦେଲେ । ମାତୃହୀନା ଅରଢ ସେହିଦିନଠାରୁ ଉମାଙ୍କ ବକ୍ଷରେ ସ୍ଥାନ ପାଇଲା । ଦୁଇ ବାନ୍ଧବୀ ଦୁଇଟି ଶିଶୁଙ୍କୁ ପାଇ ଆନନ୍ଦରେ କାଳ କାଟିଲେ । ଅଶେଷ ସ୍ନେହ ଓ ଯତ୍ନ ଭିତରେ ଥାଇ ଶିଶୁ ଦୁଇଟି ବଢ଼ିବାକୁ ଲାଗିଲେ ।

ବାଳିକା ଦୁଇଜଣ ବି ପରସ୍ପରକୁ ପ୍ରାଣ ଦେଇ ଭଲ ପାଆନ୍ତି । ସୌନ୍ଦର୍ଯ୍ୟ-ଗୁଣରେ ଅରଣି ବଡ଼ । ଅରଢର ଚଞ୍ଚଳ ସ୍ୱଭାବ ଦେଖି ସମୟ ସମୟରେ ଉମା ବିରକ୍ତ ନ ହୋଇ ରହି ପାରନ୍ତି ନାହିଁ କିନ୍ତୁ ଅରଢର ସୁକୁମାର ମୁହଁଟି ଚାହିଁଲେ ସବୁ ବିରକ୍ତି କୁଆଡ଼େ ଉଭେଇ ଯାଏ । ସବୁ-ବେଳେ ସେ ଅରଢକୁ ବୁଝାଇବାକୁ ଚେଷ୍ଟା କରନ୍ତି, "ଅଲଢ, ତୁ ଝିଅଟିଏ । ତେଣୁ ତୋର ଧୀର ସ୍ଥିର ରହିବା ଉଚିତ । ଦେଖ୍, ପ୍ରତିଭା କିପରି ଶାନ୍ତ ଝିଅଟିଏ—"

Digitized by srujanika@gmail.com

ଅରତି ତାଙ୍କ କଥା ହସରେ ଉଡ଼ାଇ ଦିଏ—କହେ, "ଖୁଡ଼ୀମା, ତମକୁ ପ୍ରଣବ କାହିଁକି ଭଲ ଦେଖାଯାଉଛି କେଜାଣି। ତା'ର ବିଲେଇ ପରି ମ୍ୟାଉଁ ମ୍ୟାଉଁ ସ୍ୱର—ଏଠି କହୁଥିଲେ ଦି'ହାତ ଦୂରକୁ ଶୁଭିବନି। ଘଣ୍ଟାକରେ ଡ଼ାକେ ବାଟ ଚାଲିବ—ଏ ସବୁ ତୁମକୁ କାହିଁକି ଭଲ ଲାଗୁଛି ?"

ଉମା କହନ୍ତି—"ଝିଅମାନଙ୍କ ପକ୍ଷରେ ସେଇ ସନ୍ତୋଷ, ତୁ ଏଥର ଚେଷ୍ଟା କର—ପ୍ରଣବ ପରି ଶାନ୍ତଶିଷ୍ଟ ହେବାକୁ—"

ଅଭିମାନରେ ଅରତି ଆଖି ଛଳ ଛଳ କରି କହେ, "ଖୁଡ଼ୀମା, ମୁଁ କଣ ଏତେ ଦୁଷ୍ଟ ! ପ୍ରଣବ ଏକା ତୁମର ସବୁ, ମୁଁ କେହି ନୁହେଁ ? କହୁ କହୁ ଅଭିମାନିନୀ ବାଳିକାର ଆଖିରୁ ଟପ୍ ଟପ୍ ହୋଇ ଲୁହ ଝରି ପଡ଼େ।

ଉମା ବ୍ୟସ୍ତ ହୋଇ ତାକୁ କୋଳକୁ ଟାଣି ଆଣନ୍ତି,—"ଛିଃ, ଏଇ ଟିକିଏ କଥାରେ ଏପରି କାନ୍ଦୁଛୁ। ତୁ ବଡ଼ ହେଲେ କାହିଁକି ସଂସାରରେ ଚଳିବୁ ଭାବି ପାରୁନି। ହଉ, ଥାଉ, ଥାଉ—ଆଉ କେବେ କିଛି ତତେ କହିବିନି—" ଅନେକ କ୍ଷଣପରେ ଅନେକ ବୁଝାସୁଝା କରି ଉମା ଅରତିକୁ ଶାନ୍ତ କରନ୍ତି।

କେଉଁଦିନ ଅରତି ଏପରି କାନ୍ଦିଲାବେଳେ ଯଦି କକେଇଙ୍କର ଦୃଷ୍ଟି ପଡ଼ିଯାଏ, ତା ହେଲେ ଉମାଙ୍କ ଉପରେ ରମବାବୁ ବିରକ୍ତ ହୁଅନ୍ତି। ଗରଜି ଗରଜି ହୋଇ ରମବାବୁ କହନ୍ତି—"ଆରତି, ତୁ ମୋ ପାଖକୁ ଚାଲି ଆ ତ—।" ଅରତି ଖୁଡ଼ୀ ମାଙ୍କ ଚାହିଁ ଚାହିଁ ଚାଲିଯାଏ କକେଇଙ୍କ

Digitized by srujanika@gmail.com

ସଙ୍ଗେ । କିଛିକ୍ଷଣ ପରେ କାଳେକଙ୍କ ଅଙ୍କ ତଳେ ଦୌଡ଼ି ଚାଲିଆସେ ଖୁଡ଼ୀ-ମା'ଙ୍କ ପାଖକୁ । ଉମା ତାକୁ ଦେଖି ମୁହଁ ଫେରାନ୍ତି; ଏଇଥି ଲାଗି ସିନା ସେ ଗାଳି ଖାଇଲେ ! ଅରୁନ୍ଧ ତାଙ୍କ କଣ୍ଠକୁ ସୁକୋମଳ ହସ୍ତରେ ବେଷ୍ଟନ କରି ଯେତେବେଳେ କହେ—"ଖୁଡ଼ୀ ମା, ମୋ ଉପରେ ରାଗିଛ ? ମୁଁ ଆଉ ତେବେ କାନ୍ଦିବିନି । ବାପା ଭାରି ଦୁଷ୍ଟ—ତୁମକୁ ସବୁବେଳେ ଗାଳି ଦଅନ୍ତି—"

କହିବା ବାହୁଲ୍ୟ, ଅରୁନ୍ଧ ରାମବାବୁଙ୍କୁ ବାପା ବୋଲି ଡାକେ । ପିଲାଦିନେ ଉମାଙ୍କୁ ମଧ୍ୟ ମା' ବୋଲି ଡାକୁଥିଲା; କିନ୍ତୁ ଦିନେ ଉମା ରାଗି-ଥିବା ବେଳେ "ଅରୁନ୍ଧ ମା'ମା" ଡାକିଲାରୁ ଉମା ରାଗିଯାଇ କହିଥିଲେ, "ଯା, ଯା—ମୁଁ ତୋର ମା' ନୁହେଁ—"

ଶିଶୁ ଅରୁନ୍ଧ ପଚାରିଲା, "ତେବେ ତୁମେ ମୋର କିଏ ?"

ଉମା ସେତେବେଳେ ନିଜମନେ ଗଜର ଗଜର ହେଉଥିଲେ—"ପର ପିଲା ଲାଗି ଏତେ କାଣ୍ଡ ! ଖୁଡ଼ୀ ବୋଲି କଣ ସବୁ ଜଞ୍ଜାଳ ମୁଣ୍ଡାଇବି......"

ଏତେ ଶବ୍ଦ ଥାଉ ଥାଉ ଶିଶୁକୁ କିନ୍ତୁ ଖୁଡ଼ୀ "ଶବ୍ଦଟି ଭାରି ଭଲ ଲାଗିଲା । ସାଙ୍ଗେ ସାଙ୍ଗେ ପଚାରିଲା—"ତୁମେ ମୋ ଖୁଡ଼ୀ—ମା ?"

ଅନ୍ୟମନସ୍କ ଭାବରେ ଉମା "ହୁଁ" କରିଦେଲେ । କିନ୍ତୁ ଯାହା କହିସାରିଲା ପରେ ସେ ତାଙ୍କ ଭୁଲଟା ବୁଝିପାରିଲେ । ବ୍ୟସ୍ତ ହୋଇ କଥାଟା ବଦଳାଇଦେବାକୁ ଚେଷ୍ଟା କଲେ; କିନ୍ତୁ ଅରୁନ୍ଧ "ଖୁଡ଼ୀ"

Digitized by srujanika@gmail.com

ଡାକିବା ଛାଡ଼ିଲା ନାହିଁ । ଉମା ରାମ ବାବୁ ଅନେକ ଚେଷ୍ଟା କଲେ 'ମା' ବୋଲି ଡାକିବାକୁ ତାକୁ କେତେ ବୁଝାଇଲେ କିନ୍ତୁ ସେ ଶୁଣିଲା ନାହିଁ । କିଛିଦିନ ପରେ ସେ ଦୁଇଟିଯାକ ପଦ ଯୋଡ଼ି କରି ଡାକିବାକୁ ଲାଗିଲା— 'ଖୁଡ଼ୀ-ମା' ।

ଅରକ୍ଷର ମନ-ଭୁଲାଣିଆ କଥା ଶୁଣି ଉମାଙ୍କ ମନ ତରଳିଯାଏ— ସେ ଆଉ ଥରେ ତାକୁ କୋଳକୁ ଟାଣି ନିଅନ୍ତି........

ବର୍ତ୍ତମାନ ସେହି ଶିଶୁ ଅରକ୍ଷ,—ଶିଶୁ ପ୍ରଶାନ୍ତ ଷୋଳ ବର୍ଷରେ ପାଦ ଦେଲେଣି । ପରିବର୍ତ୍ତନଶୀଳ ଜଗତରେ ପରିବର୍ତ୍ତନ ନ ହୋଇ କିଛି ରହେ ନାହିଁ । ପ୍ରଶାନ୍ତ ଘର ଛୋଟ ପରିବାରଟିରେ ବିପର୍ଯ୍ୟୟ ଘଟି ଅନେକ କିଛି ପରିବର୍ତ୍ତନ ହୋଇ ଯାଇଛି ଯା ଭିତରେ । ବିଧାତାଙ୍କ ଅଭିଶାପରୁ କିଶୋର ପ୍ରଶାନ୍ତ ପାଞ୍ଚବର୍ଷ ହେଲା ପିତୃହୀନ । ଛୋଟ ପରିବାରଟିର ମୁଣ୍ଡ ଭାଙ୍ଗି ପଡ଼ିଛି । କିନ୍ତୁ ଉଷା ଦୃଢ଼ ମନୋବୃତ୍ତିର ମହିଳା । ଏକମାତ୍ର ଆଦରିଣୀ ସନ୍ତାନ ପ୍ରଶାନ୍ତ ତାର ବାପା ଗଲାପରେ ସୁଦ୍ଧା—ସେ ଅନନ୍ତ ବର୍ତ୍ତମାନ ପ୍ରଶାନ୍ତକୁ ମଣିଷ କରି ତାର ଭବିଷ୍ୟତ ଗଢ଼ିବା ଭାର ତାଙ୍କ ଉପରେ ନ୍ୟସ୍ତ ହୋଇଛି । ଅଭାଗିନୀ ଉଷାଙ୍କ ସନ୍ତପ୍ତ ପ୍ରାଣର ଏକମାତ୍ର ସାନ୍ତ୍ୱନା ପ୍ରଶାନ୍ତ—କିପରି ତାକୁ ସୁଯୋଗ୍ୟ ପାତ୍ର ହସ୍ତରେ ଦାନ କରି ଚିରସୁଖୀ କରିଲେ, ସେଇଠାହିଁ ବର୍ତ୍ତମାନ ତାଙ୍କ ସାରା ଜୀବନର ଏକମାତ୍ର କାମ୍ୟ ବସ୍ତୁ ।

ଯାହେଉ ଦୁଇଟି ପରିବାରର ଦିନଗୁଡ଼ିକ ସୁଖଦୁଃଖରେ କଟି କଟି ଯାଉଥାଏ ଏବଂ ଯାଉଥାନ୍ତା ମଧ୍ୟ—କିନ୍ତୁ........



Digitized by srujanika@gmail.com

## —ଦୁଇ—

ବୈଶାଖ ମାସର ରୌଦ୍ରଦଗ୍ଧ ମୃତ୍ୟୁପରି ନିସ୍ତବ୍ଧ ଦ୍ୱିପ୍ରହର । ଦାଣ୍ଡ ରାସ୍ତାଟା ନିର୍ଜ୍ଜନ ହୋଇ ଯାଇଛି । କେତେବେଳେ କ୍ୱଚିତ୍ ଶୌଖୀନ୍ ଜିନିଷ ବିକାଳୀ, ବରଫ ବିକାଳୀ ର ଶୁଷ୍କ କଣ୍ଠସ୍ୱର ଶୁଣା ଯାଉଛି । ମଝି ମଝିରେ ଗୋଟାଏ ଦୁଇଟା ଘୋଡାଗାଡ଼ି ଯିବାର ଘଡ଼ଘଡ଼ ଶବ୍ଦ ଉତ୍ଥିତ ହୋଇ ପୁଣି ସେହି ସ୍ତବ୍ଧତା ଭିତରେ ବିଲୀନ ହୋଇ ଯାଉଛି । ସେହି ଜୀବନ ହୀନ ନୀରବତାକୁ ସଞ୍ଜୀବିତ କରିବାର ବୃଥା ପ୍ରୟାସ କରୁଛି ଗୋଟିଏ ନାମ ନ ଜଣା ପକ୍ଷୀ—କେଉଁଠି ସେ ବସିଛି କେଜାଣି, କିନ୍ତୁ ଅକ୍ଳାନ୍ତ ଭାବରେ ସେ ବୋବାଉଛି ।

ବୋଧହୁଏ ତାଙ୍କର ପରି ସଙ୍ଗୀହୀନ ସେ...ଉକ୍ଷା ଅଟେର ପକ୍ଷୀଟିକୁ ଦେଖିବାକୁ ଚେଷ୍ଟା କଲେ । ପରକ୍ଷଣରେ ମନ ସଂଯୋଗ କଲେ ହାତରେ ଥିବା ସିଲେଇ ଉପରେ । ସ୍ୱାମୀଙ୍କ ମୃତ୍ୟୁ ପରେ ତାଙ୍କୁ ନିଜେ ଉପାର୍ଜ୍ଜନ କରିବାକୁ ପଡୁଛି, ଅବଶ୍ୟ ତାଙ୍କର ସଦାଶୟ ଭାଇ ମାସକୁ ପଚାଶ ଟଙ୍କା ନିୟମିତ ଭାବରେ ପଠାଉଛନ୍ତି, କିନ୍ତୁ ସେଥିକରେ ପ୍ରଣବର ପଢ଼ା ଖର୍ଚ୍ଚ ସହିତ ଅନ୍ୟାନ୍ୟ ଖର୍ଚ୍ଚ ଚଳାଇବା କଷ୍ଟକର । "ଗୃହଲକ୍ଷ୍ମୀ" ନାମରେ ଗୋଟିଏ ଅନୁଷ୍ଠାନ ଅଛି । ଜାମା, କଣ୍ଢେଇ, ପାମ୍ପଡ଼, ବଡ଼ି ଇତ୍ୟାଦି ତିଆରି କରି ଦେଲେ, ଅନୁଷ୍ଠାନ ତରଫରୁ ବିକ୍ରୀ କରି ହୁଏ । ଲବ୍ଧ ଧନ ନିର୍ମାତା ପାଆନ୍ତି । ମୁଷ୍ଟି-ମହିଳାଙ୍କୁ ଉପାର୍ଜ୍ଜନ କରିବାରେ ବେଶ୍ ସାହାଯ୍ୟ କରେ ଅନୁଷ୍ଠାନଟା । ଜାମା ଇତ୍ୟାଦି ଘରେ ତିଆରି କରି ସେ ସେହି ଅନୁଷ୍ଠାନ କୁ ପଠାନ୍ତି—ସେଥିରୁ ଯାହା କିଛି ମିଳେ । ପ୍ରଣବର ବାହାଘର ପାଇଁକି ସେ ତ ସଞ୍ଚୟ କରି କିଛି ରଖିବାକୁ ହେବ ।

Digitized by srujanika@gmail.com

ପ୍ରଶାନ୍ତ କଲେଜକୁ ଯାଉଛି । ଉମା ଆସି ନାହାନ୍ତି; ବୋଧହୁଏ ରାମବାବୁ ଘରେ ଅଛନ୍ତି ।

ଉଷା ବସି ସିଲେଇ କରୁଥାନ୍ତି, ଅଳସ ଦ୍ୱିପହରଟା ପରି ତାଙ୍କ ମନଟା ମଧ୍ୟ ଉଦାସୀନ ହୋଇ ଯାଉଛି···ମଣିଷର ଭାଗ୍ୟ କେତେ ଚଞ୍ଚଳ ବଦଳି ଯାଏ ସତେ ! ପାଞ୍ଚବର୍ଷ ପୂର୍ବେ କିଏ ଜାଣିଥିଲା ଯେ ତାଙ୍କୁହିଁ ଘର ଚଳାଇବା ପାଇଁ ଟଙ୍କା ରୋଜଗାର କରିବାକୁ ହେବ ! ଓକିଲ ହରିହର ବାବୁଙ୍କର ଆଦରଣୀ ଝିଅ ହୋଇଥିଲେ ସେ । ଏ ସବୁ ଚିନ୍ତା କରିବାକୁ କିଛି ଲୋଡ଼ା ପଡୁ ନ ଥିଲା । କିନ୍ତୁ ମନରେ ସ୍ୱାମୀଙ୍କ ଉପାର୍ଜିତ ଟଙ୍କାକୁ ସେ ଖାଲି ବାକ୍ସରେ ରଖି ଖର୍ଚ୍ଚ କରୁଥିଲେ, ଆୟ କିପରି ହେବ ସେ ଚିନ୍ତା ତ ନଥିଲା, ଖାଲି ବ୍ୟୟ କରିବା ଭାର ତାଙ୍କ ଉପରେ ନ୍ୟସ୍ତ ଥିଲା । ସ୍ୱାମୀ ସାମାନ୍ୟ ଗୃହକାର୍ଯ୍ୟ ମଧ୍ୟ ନିଜ ହାତରେ କରିବାକୁ ତାଙ୍କୁ ଦଅନ୍ତି ନାହିଁ···ଏତେ ସ୍ନେହ ···ଏତେ ଆଦର···ସେସବୁ କୁଆଡେ ଉଭେଇ ଗଲା···ଏକାନ୍ତ ଆଶ୍ରୟସ୍ଥଳ ସ୍ୱାମୀ କୁଆଡ଼େ ଚାଲିଗଲେ । ସେ ସବୁ ଆଜି ସ୍ୱପ୍ନ ପରି ଲାଗୁଛି···ଆଜି ଏତେବଡ଼ ସଂସାରରେ ସେ ଏକାକିନୀ ···ଖାଲି ସ୍ୱର୍ଗୀୟ ସ୍ୱାମୀଙ୍କର ଟିକିଏ ସାନ୍ତ୍ୱନା ପରି ପିତୃହରା ପ୍ରଶାନ୍ତ ରହିଛି ତାଙ୍କ ବାହୁତଳେ—କିପରି ସେ ସୁଶିକ୍ଷିତ ହେବ, ସୁପାତ୍ରରେ ପଡ଼ିବ···

ଉଷାଙ୍କ ମନଟା କରୁଣ ହୋଇଗଲା । ଆଖି ଦୁଇଟି ମଧ୍ୟ ଲୁହରେ ପୂରିଗଲା । ପରକ୍ଷଣରେ ଦୁର୍ବଳ ଭାବକୁ ମନରୁ ଝାଡ଼ି ଦେବାକୁ ଚେଷ୍ଟା କରି ସେ ସିଲେଇ କରିବାକୁ ଲାଗିଲେ; କିନ୍ତୁ ମନଟା ସେଥିରେ ଆଉ ନିବିଷ୍ଟ ହୋଇପାରିଲାନି । ରହି ରହି ଛାତି ଭିତରଟା ଅବ୍ୟକ୍ତ ଯନ୍ତ୍ରଣାରେ ଭରି ଯାଉଥିଲା ।

Digitized by srujanika@gmail.com

ଦାଣ୍ଡଦୁଆରେ ଗାଈ ରମ୍ଭା ଶବ୍ଦ ଶୁଭିଲା । ପରକ୍ଷଣରେ ଦ୍ୱାରରେ କରାଘାତ ଶୁଣି ସେ ଉଠିପଡ଼ି ଦ୍ୱାର ଫିଟାଇବାକୁ ଗଲେ । ଦ୍ୱାର ଖୋଲି ଆଗରେ ସେ ଯାହାକୁ ଦେଖିଲେ, ତାକୁ ଦେଖି ହସିବେ କି କାନ୍ଦିବେ କିଛି ଠିକ୍ କରି ପାରିଲେନି ପ୍ରଥମେ ।

ବାରିପଦାରେ ଥିଲାବେଳେ ସ୍ୱାମୀଙ୍କ ଘନିଷ୍ଠତମ ବନ୍ଧୁ ସଦାନନ୍ଦ ବାବୁଙ୍କ ପତ୍ନୀ ରେଖାଙ୍କ ସହିତ ତାଙ୍କର ଗଭୀର ବନ୍ଧୁତ୍ୱ ଥିଲା, ଅନେକ-ଦିନ ପରେ ରେଖାଙ୍କୁ ଅତିଥିରୂପେ ସେ ଦେଖିଲେ । ପ୍ରଥମେ [illegible] ବୈଧବ୍ୟ ବେଶ ଦେଖି ଚିହ୍ନି ପାରି ନ ଥିଲେ । ପରେ ତାଙ୍କ ପାଟି ଶୁଣି କୁଣ୍ଢାଇ ପକାଇଲେ ଦୁଇହାତରେ—ଆଖିରୁ ଧାରଧାର ଲୁହ ଗଡ଼ିପଡ଼ିଲା ! ରେଖା ମଧ୍ୟ କାନ୍ଦିଲେ—ଦୁଇଜଣଯାକଙ୍କର ସମଦଶା ଦେଖି, ଅଳ୍ପ ଶାନ୍ତ ହେବାପରେ ଉଷା ରେଖାଙ୍କୁ ଘର ଭିତରକୁ ନେଇ ଆସିଲେ ।

ଏତେ କ୍ଷଣପରେ ସେ ଦେଖିଲେ ରେଖାଙ୍କ ପଛରେ ଜଣେ ରୂପବାନ୍ ବଳିଷ୍ଠ ଯୁବକ ଠିଆ ହୋଇଛି । ରେଖା ଯୁବକଟିକୁ ଲକ୍ଷ୍ୟ କରି କହିଲେ, "ସୁରେଶ, ଇମିତ ଚାହିଁରହିଛୁ କଣ ? ଯେ, ତୋ ବାରିପଦାର ମାଉସୀ ପରା— ନମସ୍କାର କର—।" ପରେ ଉଷାଙ୍କ ଆଡ଼କୁ ଚାହିଁ ମୁହଁ ଉପରକୁ ଶୁଖିଲା ହସ ଟିକିଏ ଟାଣି ଆଣି କହିଲେ —"କି ଉଷା, ଚିହ୍ନିପାରୁନୁ ? ତୋ, ପୋଷିଅ ପୁଅ ସୁରେଶକୁ—"

ସୁରେଶ ଅପ୍ରତିଭ ହୋଇ ସଲଜ୍ଜ ନମସ୍କାରଟିଏ କଲା, ଉଷା କ୍ଷୁଣ୍ଣ ହସ ହସି କହିଲେ—"ଆରେ ସେଇ ଛ ବର୍ଷିଆ ସୁରେଶ, ଏତେ ବଡ଼ ହୋଇଗଲାଣି ! ମୁଁ ତ ଆଗ ଚିହ୍ନି ପାରିଲିନି·· ସେତେବେଳେ କନ୍ଦୁର ଠାକୁ ବାପା—ତୁମ ପୁଅ—ଚିହ୍ନିବି—"

Digitized by srujanika@gmail.com

ହସିହସି ସୁରେଶ କହିଲା, "ଡାକ୍ତର, ମାଉସୀ, ଏ ଦୁଇଟା ଆଶୀର୍ବାଦ କଲେ ମୋର ବାଳଗୁଡ଼ିକ ଏଣ୍ଟିକଣି ପାଚିଯିବ ଯେ—"
ରେଖା କୃତ୍ରିମ ବିରକ୍ତି ଦେଖାଇ କହିଲେ, "ଆଃ ସୁରେଶ, ସବୁଥିରେ ଗୋଟେ ଥଟ୍ଟାଲିମି—ଯା—ଗାଡ଼ିବାଲାକୁ ପଇସା ଦେଇ ଆ ତ—

ମାଁଙ୍କଠାରୁ ପଇସା ନେଇ ହସି ହସି ସୁରେଶ ଚାଲିଗଲା, ବାହାର ଆଡ଼କୁ। ଉଷା ରେଖାଙ୍କ ସହିତ କଥାବାର୍ତ୍ତା ହେବାକୁ ଲାଗିଲେ—ସୁରେଶ ଏଠାକୁ ପ୍ରଫେସର ହୋଇଆସିଛି-ସେହେତୁ ରେଖା ଅସିଛନ୍ତି ଗୋଟାଏ ଘରଭଡ଼ା ନଅହୋଇଛି, ଅନେକ କଷ୍ଟରେ ଖୋଜି ଖୋଜି ଉଷାଙ୍କ ଠିକଣା ପାଇଲେ ସେ। ଉଷା ନିଜର କଟାଇଥିବା ଜୀବନ କଥା କହିଲେ, ପ୍ରଣତି କଥା କହିଲେ…………

କଲେଜ୍‌ରୁ ଫେରି ଦୌଡ଼ି ଦୌଡ଼ି ଘରଭିତରକୁ ପଶି ଯାଇ ହଠାତ୍ ମାଁଙ୍କ ନିକଟରେ ଜଣେ ଅପରିଚିତ ଯୁବକକୁ ଦେଖି ଥମକି ଠିଆ ହୋଇପଡ଼ିଲା ପ୍ରଣତି। ଜନନୀ ସମ୍ବୋଧରେ ଡାକିଲେ—"ଆ—ମା, ଇଏ କିଏ ?"

ସୁରେଶର ବିସ୍ମାରିତ ଦୃଷ୍ଟି ସମ୍ମୁଖରେ ସଙ୍କୁଚିତ ଭାବେ ଅଗ୍ରସର ହୋଇ ଜନନୀଙ୍କ ନିର୍ଦ୍ଦେଶ କ୍ରମେ ପ୍ରଣତି ସଲଜ୍ଜ ପ୍ରଣାମଟିଏ କଲା ରେଖାଙ୍କ ପାଦତଳେ। ରେଖା ତାକୁ ଟାଣି ଆଣିଲେ ଆଦରରେ। ଉଷା ରେଖାଙ୍କ ପରିଚୟ ଜଣାଇଦେଲେ ସଂକ୍ଷିପ୍ତରେ।

ଅନେକ—ଅନେକ ଦିନ ପରେ ଉଷାଙ୍କ ଛୋଟ ଘରଟି ଆନନ୍ଦ ଜନିତ ସୁମଧୁର ହାସ୍ୟର ଧ୍ୱନି ଶୁଣିବାକୁ ପାଇଲା। ଘରଟି ଯେପରି ଉଲ୍ଲସି ଉଠିଲା। ଅନେକ କ୍ଷଣ ପରେ ଖାଇ ପିଇ ରେଖା ଓ

Digitized by srujanika@gmail.com

'ସୁରେଶଙ୍କୁ ଉଷାଦେବୀ ବାରମ୍ବାର ପୁଣି ଆସିବାକୁ ଅନୁରୋଧ ଜଣାଇ ବିଦାୟ ଦେଲେ । ଘର ଭିତରକୁ ଫେରି ଆସୁ ଆସୁ, ତାଙ୍କ ଅନ୍ତର ଭିତରେ ଗୋଟିଏ ନୂତନ ଆଶା ଉଙ୍କି ମାରୁଥିଲା । ଅନେକଦିନଠାରୁ ପ୍ରଣତି ପାଇଁ ସୁପାତ୍ର ଖୋଜୁଥିଲେ ସେ । ଆଜି ସୁରେଶଙ୍କୁ ଦେଖି ଯେପରି ଗୋଟିଏ ବଡ଼ ବୋଝ ତାଙ୍କ ମୁଣ୍ଡରୁ ଓହ୍ଲାଇ ଗଲା । ସୁରେଶ ତାଙ୍କର ଅତି ଆପଣାର ହେବେ । ଏ ବିଷୟରେ ସେ ଇଙ୍ଗିତ ମଧ୍ୟ କରିଛନ୍ତି ରେଖା ଆଗରେ । ତାଙ୍କର ସ୍ଥିର ବିଶ୍ୱାସ—ରେଖାଙ୍କର ଏଥିରେ ଆଦୌ ଅମତ ହେବନାହିଁ । ସୁରେଶଙ୍କୁ ଭାବୀ-ଜାମାତା ରୂପେ କଳ୍ପନା କରି ପରମତୃପ୍ତିରେ ବକ୍ଷ ତାଙ୍କର ପୂରିଗଲା । ସୁରେଶଙ୍କୁ କାଲି ଏଠାକୁ ଆସିବାକୁ ସେ କହିଛନ୍ତି—ସୁରେଶ ମଧ୍ୟ ସ୍ୱୀକୃତ ଜଣାଇଛନ୍ତି । ବୁଦ୍ଧିମତୀ ଉଷା ସ୍ଥିର କଲେ ପ୍ରଣତିକୁ ଏଥର ସୁରେଶ ସହିତ ମିଳାମିଶା କରିବା ସୁଯୋଗ ଦେବା ଉଚିତ ।



Digitized by srujanika@gmail.com

## — ତିନି —

ମା' ପରଦିନ ଉଷାଙ୍କର ନିର୍ଦ୍ଦେଶ ଅନୁଯାୟୀ ଚେଷ୍ଟା କରିବାକୁ ସୁରେଶକୁ ପଠାଇଦେଲେ ରେଖା । ଉଷାଙ୍କର ମନୋଭାବ ତାଙ୍କର ଅଜ୍ଞାତ ନଥିଲା । ଶାନ୍ତ "ଶିଷ୍ଟ ସ୍ୱଭାବର ପ୍ରକୃତିକୁ ଦେଖି ସେ ମଧ୍ୟ ମନେ ମନେ ଭାବିଥିଲେ ବୋହୂକଲେ ମନ୍ଦ ହୁଅନ୍ତା ନାହିଁ—ତେବେ ପୁଅର ଇଚ୍ଛାନୁଯାୟୀ କଥା—"

ରବିବାର ହେତୁ କଲେଜ୍ ବନ୍ଦ । ଦୀର୍ଘ ଦ୍ୱିପ୍ରହରଟା ଅଲେଖ ସଙ୍ଗେ କଟାଇବାପାଇଁ ତା' ପାଖକୁ ଯେତେବେଳେ ପ୍ରଶାନ୍ତ ଯିବାକୁ ବାହାରୁଥିଲା, ସେତିକିବେଳେ ଦାଣ୍ଡ ଦୁଆରେ କିଏ କରାଘାତ କଲା । ଉଷା ଗୃହକାର୍ଯ୍ୟରେ ବ୍ୟସ୍ତ ଥିଲେ—କହିଲେ, "ଯା, ମା—ପ୍ରଶାନ୍ତ, ବୋଧହୁଏ ସୁରେଶ ଆସିଛି, ଦୁଆରଟା ଫିଟାଇ ଦେ—"

ସୁରେଶ ସହିତ ତାର ଯେ କି ସମ୍ବନ୍ଧ ସ୍ଥାପିତ କରିବାକୁ ମା' ଚାହୁଁଛନ୍ତି, ତାହା ଜାଣିବାକୁ ପ୍ରଶାନ୍ତର ବାକି ନ ଥିଲା । ନିଜର ଅଜ୍ଞାତ-ସାରରେ ପୁଲକର ଢେଉ ଖେଳିଗଲା ତାର ସର୍ବାଙ୍ଗରେ । ମା'ଙ୍କ ସମ୍ମୁଖରେ ସୁରେଶକୁ ଦୁଆର ଖୋଲିବାକୁ ଯିବାକଥା ଭାବି, ଅକସ୍ମାତ୍ ସେ ଅସ୍ଥିର ହୋଇ ଉଠିଲା ! ତାପରେ ଟିକେ ଇତସ୍ତତଃ କରି ସେ ସେ ଅତ୍ୟନ୍ତ ସଙ୍କୁଚିତ ଭାବରେ ଯାଇ ଦ୍ୱାରଟା ଖୋଲିଦେଲା ।

କାଲିର କଥାବାର୍ତ୍ତା ପରେ ସୁରେଶର ସଙ୍କୋଚଟା ଏକପ୍ରକାର କଟିଯାଇଛି ! ବେଶ୍ ସ୍ୱଚ୍ଛନ୍ଦ ଭାବେ ସେ ପ୍ରଶାନ୍ତକୁ ଦେଖିଲାମାତ୍ରେ ହସି

Digitized by srujanika@gmail.com

ହସି କହିଲା—"ପ୍ରଶାନ୍ତ, ମତେ ସ୍ୱାଗତୋକ୍ତି ଗୋଟାଏ କିଛି କହିବାକୁ ହେବ—ଇଂରାଜୀରୁ ଫର୍ମା କରି ନେଇଛି, ସୁପ୍ରଭାତ କହିବି ନା ଶୁଭମଧ୍ୟାହ୍ନ କହିବି, କହିଲ—"

ପ୍ରଶାନ୍ତ ତାର ଏ ପ୍ରଶ୍ନରେ ଏକାବେଳକେ ଅପ୍ରସ୍ତୁତ ହୋଇଗଲା । କିଛିକ୍ଷଣ ପରେ ସେ ନାକ କଣ୍ଠସ୍ୱରକୁ ଯଥାସମ୍ଭବ ସହଜ ଅବସ୍ଥାକୁ ଫେରାଇ ଆଣି କହିଲା, "ଏବେ ତ ଅପରାହ୍ନ ହୋଇଛି—ଶୁଭ ମଧ୍ୟାହ୍ନହିଁ କହିବାକୁ ପଡ଼ିବ—"

ସୁରେଶ ହସି ହସି କହିଲା—"ବେଶ୍, ତାହେଲେ ଶୁଭମଧ୍ୟାହ୍ନ—"

ପ୍ରଶାନ୍ତ ମୁଣ୍ଡହଲାଇ ଛୋଟ ଉତ୍ତରଟିଏ ଦେଲା, "ଅଚ୍ଛା—"

ଜୟାଦେବୀ ସୁରେଶକୁ ଦେଖି ଉତ୍‌ଫୁଲ୍ଲ କଣ୍ଠରେ "ଲେଖା କଣ କରୁଥିଲ ?" ଇତ୍ୟାଦି ସାଧାରଣ ଛୋଟ ଛୋଟ ପ୍ରଶ୍ନ କିଛିକ୍ଷଣ ପଚାରି ଶେଷରେ ନିଜର ଗୃହକାର୍ଯ୍ୟର ବାହାନା ଦେଖାଇ, ସେ ଦୁହିଁଙ୍କୁ କକ୍ଷ ଭିତରେ ଗଳ୍ପ କରିବାକୁ କହି, ନିଜେ ଅଦୃଶ୍ୟ ହୋଇଗଲେ ।

ବିଚରା ପ୍ରଶାନ୍ତ ଏ ଅପ୍ରତ୍ୟାଶିତ ଅବସ୍ଥାରେ ପଡ଼ି, କଣ କରିବ, କଣ କହିବ—କିଛି ଭାବି ସ୍ଥିର କରି ପାରିଲାନାହିଁ । ପ୍ରଶାନ୍ତର ଲଜ୍ଜାନମ୍ର ମଧୁର ସ୍ୱଭାବରେ ଆକୃଷ୍ଟ ହେଲା ସୁରେଶ । ସହଜ ଅବସ୍ଥା ଫେରାଇ ଆଣିବାକୁ ସେ ପ୍ରଶାନ୍ତର ପଢ଼ାପଢ଼ି ଇତ୍ୟାଦି ସାଧାରଣ ପ୍ରଶ୍ନ କରିବାକୁ ଲାଗିଲା ।

ଧୀରେ ଧୀରେ ପ୍ରଶାନ୍ତର ସଙ୍କୋଚ ଲଜ୍ଜା ଭାଙ୍ଗି ଯିବାକୁ ଲାଗିଲା ।

Digitized by srujanika@gmail.com

ପ୍ରଶାନ୍ତ ମୁଗ୍ଧ ହୋଇଗଲା । ଗୌରକାନ୍ତି ଏହି ସୁକୁମାର ଯୁବକର ରୂପ—ମଧୁର ବ୍ୟବହାର ନିକଟରେ ତାର କୁମାରୀ ହୃଦୟ ଅଳ୍ପ ଅଳ୍ପେ ଶ୍ରଦ୍ଧାରେ ନଇଁ ପଡ଼ିଲା—ଭବିଷ୍ୟତରେ ଦୁଇଜଣଙ୍କ ଭିତରେ ହୋଇଥିବା ମଧୁର ସମ୍ପର୍କଟିର କଥା ଭାବି, ମଝି ମଝିରେ ଅନ୍ୟମନସ୍କ ହୋଇ ଯାଉଥାଏ ସେ ।

ସୁରେଶ ବି ଯେ ମୋହିତ ହୋଇ ପ୍ରଶାନ୍ତକୁ ଅସ୍ୱୀକାର କରି ନେବାକୁ ବସି ନଥିଲା; ଯାହା କହି ହେବନି, କିନ୍ତୁ ଶାନ୍ତ—ମେଘାବୃତ ଦିବସ ମଧ୍ୟକୁ ଅଶାନ୍ତିର ଝଡ଼ ପରି ଅରତି ପଶିଆସି, ସବୁ ଗୋଳମାଳ କରିଦେଲା ଯେପରି ।

ପ୍ରଶାନ୍ତର ସନ୍ଧାନରେ ଆସି—"ପ୍ର-ଶା-ନ୍ତି···" ଡାକି ଡାକି ଘର ଭିତରେ ପଶି ଜଣେ ଅପରିଚିତ ସୁଶ୍ରୀ ଯୁବକଙ୍କୁ ପ୍ରଶାନ୍ତ ନିକଟରେ ଦେଖି ଦୁଆର ମୁହଁରେ ଠିଆହୋଇ ପଡ଼ିଲା ଅରତି ।

ବୀଣାବିନିନ୍ଦିତ କଣ୍ଠସ୍ୱର ଶୁଣି ସୁରେଶ ମୁହଁ ଉଠାଇଲା—ହଠାତ୍ ଯେପରି ସ୍ତମ୍ଭିତ ହୋଇଗଲା ସେ । ଏତେ ସୁନ୍ଦର !···ଶୁଭ କି ଅଶୁଭ କ୍ଷଣରେ କେଜାଣି ତାର ବିସ୍ମୟ-ବିମୁଗ୍ଧ ଦୃଷ୍ଟି ଯାଇ ମିଳିତ ହୋଇଗଲା ଅରତିର ବିସ୍ମିତ-ଉଜ୍ଜ୍ୱଳ ଦୃଷ୍ଟି ସଙ୍ଗେ । ମୁହୂର୍ତ୍ତିକ ପାଇଁ ସୁରେଶ ଯେପରି ସ୍ଥାନ, କାଳ, ପାତ୍ର ସବୁ ଭୁଲିଗଲା । ପରକ୍ଷଣରେ ଗୋଟିଏ ଅଦ୍ଭୁତ ଶିହରଣ ଜାଗିଉଠିଲା ତାର ଅନ୍ତର ଭିତରେ ତା'ର ଦେହର ପ୍ରତ୍ୟେକ ଲୋମକୂପରେ—

ପ୍ରଶାନ୍ତ ସେତେବେଳକୁ ନିଜ ଭାବରେ ବିଭୋର । ସୁରେଶର ମୁହଁର ପରିବର୍ତ୍ତନ ସେ ଲକ୍ଷ୍ୟ କଲାନାହିଁ । ଉପରନ୍ତୁ ଅରତି, ତାକୁ ଏ

Digitized by srujanika@gmail.com

ସୁରେଶଙ୍କୁ ଏକାସଙ୍ଗେ ଦେଖିପାରିଲା ଦେଖି, ସେ ଲଜ୍ଜାରେ ପଡ଼ିଗଲା । କୌଣସି ମତେ ଉଠିପଡ଼ି, ଜଡ଼ିତ କଣ୍ଠରେ ଅରୁନ୍ଧତୀକୁ ଡାକି ଆଣି ସୁରେଶ ସହିତ ପରିଚୟ କରାଇଦେଲା । ପରିଚୟ ହେଲାପରେ ସୁରେଶ ଯେ ତାର ନୂଆ ହୋଇ ଆସୁଥିବା ଫିଜିକ୍ସ ପ୍ରଫେସର ଶୁଣି, କାହିଁକି ଯେ ଟିକିଏ ଆନନ୍ଦରେ ଅରୁନ୍ଧତୀର ଅନ୍ତର ପୁରିଗଲା, ତାର କାରଣ ସେ ନିଜେ ଜାଣି ପାରିଲା ନାହିଁ ।

ପ୍ରଥମ ପ୍ରଥମ ଟିକିଏ ଜଡ଼ିତ କଣ୍ଠରେ କଥାବାର୍ତ୍ତା ହେବାପରେ ତିନି ଜଣଯାକ ବେଶ ସହଜ ଭାବରେ କଥାବାର୍ତ୍ତାରେ ମଜ୍ଜିଗଲେ । ସୁରେଶ ବେଶ କୌତୁକ-ପ୍ରିୟ ମଣିଷ । ତାର ରହସ୍ୟ-ଭରା କଥାଗୁଡ଼ିକ ଶୁଣି ପ୍ରଣତି ଆଉ ଅରୁନ୍ଧତୀ କଲକଣ୍ଠରେ ହସିଉଠନ୍ତି ।

ସାଗ୍ରହରେ ଅରୁନ୍ଧତୀ ପଚାରିଲେ—"ସାର୍, ଆପଣ ଆଉ କେତେଦିନ ପରେ କଲେଜ୍‌ରେ ଯୋଗ ଦେବେ ? ଛୁଟି ଆଉ କେତେଦିନ ବାକି ଅଛି ?"

ଅଧୀର ଆଗ୍ରହ ହେତୁ ଅରୁନ୍ଧତୀର ଚକ୍ଷୁ ଦୁଇଟି ଚକ୍ ଚକ୍ କରି ଉଠିଲା ।

ସେହି ଆଡକୁ ମୁଗ୍ଧ ଦୃଷ୍ଟିରେ ମୁହୂର୍ତ୍ତକ ପାଇଁ ଚାହିଁ ରହି, ସୁରେଶ ଉତ୍ଫୁଲ୍ଲ କଣ୍ଠରେ କହିଲା, "ଆଉ ତିନିଦିନ—"

"ଆଉରି ତିନିଦିନ !" ଅରୁନ୍ଧତୀର ବିଶାଳ ଚକ୍ଷୁ ଦୁଇଟାର ଭାବ ବଦଳିଗଲା, ସୁରେଶ ସନ୍ତର୍ପଣରେ ସେହି ନୂତନ ସୌନ୍ଦର୍ଯ୍ୟକୁ ଦେଖିନେଲା । "ଆମର ପଢ଼ାପଢ଼ିରେ ବହୁ କ୍ଷତି ହେଉଛି—" ଅତ୍ୟନ୍ତ

Digitized by srujanika@gmail.com

ସାଧାରଣ ଛୋଟଛୋଟ କଥା ! ହେଲେମଧ୍ୟ, ସେହି ମଧୁର କଣ୍ଠ-ସ୍ୱର ଶୁଣି ଚଞ୍ଚଳ ତୃପ୍ତିରେ ସୁରେଶ ପ୍ରାଣ ପୂରିଗଲା !

ଅନେକ—ଅନେକ ସମୟ ଧରି ସେମାନେ କଥାବାର୍ତ୍ତା ହେଲେ, ହସ, ଫାଜିଲାମି, ତର୍କ, ବିତର୍କ ରେ ଏହି ସୁଦୀର୍ଘ ଦ୍ୱିପହରଟା ଯେ କିପରି ଗୋଟିଏ ମୁହୂର୍ତ୍ତି ପରି କଟିଗଲା, ସେମାନେ କେହି ତା ଜାଣି ପାରିଲେନି ।

ଊଷାଙ୍କ ଇଙ୍ଗିତ୍ ବିକେଳ ପୂର୍ଣ୍ଣ ଅହ୍ୱାନରେ ତନ୍ଦ୍ରାଜଣେ ଯାଉଁରି ଚମକି ଉଠିଲା; ଆରତି କି ସେଠାରେ ଦେଖି ବିକେଳ ହୋଇଛନ୍ତି ଊଷା !...

ବିଦାୟ ସମୟରେ ବାରମ୍ବାର ଦୁଇଟି ତରୁଣୀ ସୁରେଶକୁ ପୁଣି ଆସିବାକୁ ଅନୁରୋଧ ଜଣାଇ ବିଦାୟ ଦେଲେ । ସୁରେଶ ମଧ୍ୟ ଆନନ୍ଦ-ବିହ୍ୱଳ ହୃଦୟରେ ପୁଣି ଆସିବାକୁ ସ୍ୱୀକୃତି ଜଣାଇ ବିଦାୟ ନେଲେ । ସେତେବେଳେ ସୁରେଶର ହୃଦୟ-ଆକାଶ ରେ ଆରତିର ପବିତ୍ର ସୁନ୍ଦର ମୁଖ-ଚନ୍ଦ୍ରମା ଉଙ୍କି ମାରି ଚାହିଁଥିଲା; ଆଉ ପ୍ରଣତିର ମଧ୍ୟ ହୃଦୟ ପୂର୍ଣ୍ଣ ହୋଇ ଯାଇଥିଲା ସୁରେଶର ସୁକୁମାର ଛବିରେ—ଆଉ ଆରତି ? ସୁରେଶ ଯିବା ପରେପରେ ସେ ବଡ଼ ଅନ୍ୟମନସ୍କ ହୋଇପଡ଼ିଥିଲା··· କାହିଁକି ?

\+ + + +

ତାପରେ ପ୍ରତି ରବିବାର ଦିନ ସୁରେଶ ଆସିବାକୁ ଲାଗିଲା । ପ୍ରଣତି ମାଁଙ୍କ ସଙ୍ଗେ ସୁରେଶର ଘରକୁ ମଧ୍ୟ କେତେ ଥର ଯାଇଥିଲା । ପ୍ରଣତି ଘରକୁ ଯିବା ବିଷୟରେ ସୁରେଶର ଆଗ୍ରହ ଦେଖି, ଊଷା ଓ ରେଖା ଉଭୟେ ଆନନ୍ଦିତ ହୋଇଥିଲେ । କିନ୍ତୁ ପ୍ରଣତି ସହିତ ଘନିଷ୍ଠ ଭାବେ ମିଶିବା ପାଇଁ ବେଶୀ ସୁଯୋଗ ପାଉଥିଲେ ମଧ୍ୟ, ସୁରେଶ ସେହି ଧନର ସେହି କ୍ଷଣିକ ଦେଖା ଆରତିକୁ ତାର ଜ୍ୱାଳୀ ମନୀକୁପେ ଟିକେ ଭରି

Digitized by srujanika@gmail.com

ନେଉଥିଲା । ଅଲୌକିକ ପାଇଁ ଅତୀତକୁ ନିକଟରେ ପାଇବାଟା ତାର ଏକମାତ୍ର କାମ୍ୟବସ୍ତୁ ହୋଇ ହେଲା । ସେହି ଆଶାରେ ସେ ନିଷ୍କମ୍ପିତ ଭାବେ ଅପେ ପ୍ରଣୟର ଧରକୁ । ଅତୀତକୁ ଦେଖିଲା ଷଣି ତାର ମନେହୁଏ, ଆଉ ତାର ଅତି ପରିଚିତା ! ଯୁଗ ଯୁଗାନ୍ତର ଧରି ଆରତି ସହିତ ତାର ପରିଚୟ ଅଛି ! ଆରତିକୁ ସେ ଭଲପାଏ ପ୍ରାଣ ଭରି ଭଲପାଏ ! ଆରତିର ଘନକୃଷ୍ଣ ପକ୍ଷ୍ମ ଆବୃତ ଉଜ୍ଜ୍ୱଳ ବଡ ବଡ଼ ଦୁଇଟି ନୟନର ଦୃଷ୍ଟିରେ ସେ ମୋହିତ ହୋଇଯାଏ—କି ସୁନ୍ଦର ସରଳତା ଭରି ଚକ୍ଷୁ ଦୁଇଟି ! ଆରତି ଯେ ତାର ହୃଦୟ-ସିଂହାସନର ଅଧିଷ୍ଠାତ୍ରୀ ଦେବୀ !

ବସ୍ତୁତଃ ବିପର୍ଯ୍ୟୟ ଘଟିଥିଲା, ଉଭୟଙ୍କ ଯୋଡ଼ିର ହୃଦୟ ଭିତରେ, କିନ୍ତୁ ସବୁଠୁ ଆଶ୍ଚର୍ଯ୍ୟର କଥା, ଚଞ୍ଚଳା ଆରତିର ବ୍ୟବହାର କିଛି ମାତ୍ର ବଦଳିଲା ନାହିଁ, ତା'ର ଦ୍ରୁତ ହୃଦୟ ଭିତରେ ଅନ୍ତଃସଲିଳା ଫଲ୍‌ଗୁପରି ସୁରେଶ ପ୍ରତି ସ୍ନେହୋଚ୍ଛ୍ୱାସର ସ୍ରୋତ ବୋହି ଯିବାକୁ ଲାଗିଲା । ବାହାରେ ଅଥଚ ସେଇ ସ୍ନେହୋଚ୍ଛ୍ୱାସର ଚିହ୍ନ ସୁଦ୍ଧା ପ୍ରକାଶ ହୋଇ ପଡିବାକୁ ଦେଉନ ସେ—କିନ୍ତୁ ସଦାସର୍ବଦା ତାର କୁମାରୀ ହୃଦୟଟାକୁ ଆଚ୍ଛନ୍ନ କରି ରଖିଲା ସୁରେଶର ଚିନ୍ତା !

ଶାନ୍ତପ୍ରକୃତି ପ୍ରଣତି ମଧ୍ୟ ସଯତ କରି ରଖିଥିଲା ନିଜର ଭାବଧାରାକୁ ଖାଲି କଳ୍ପନାରେ ନିଜ ହୃଦୟ ଭିତରେ ସଞ୍ଚିତ ଥିବା ସ୍ନେହର ମନ୍ଦାକିନୀ ଧାରାରେ ସେ ଅଭିଷିକ୍ତ କରିଦେଉଥାଏ ସୁରେଶକୁ । ସୁରେଶ ତା'ର ଅନ୍ତରର ଦେବତା—ଅନ୍ତର ଭିତରେ ଗୋପନରେ ପ୍ରଣତି ତାର ପ୍ରୀତି ଅର୍ଘ୍ୟ ଢାଳି ଦେଉଥିଲା ତା'ରି ପାଦତଳେ—ଏହିପରି ଏକ ସାଗର-କୂଳ ଲକ୍ଷ୍ୟ କରି ଦୁଇଟି ପ୍ରେମବିହ୍ୱଳ ତଟିନୀ ବୋହିଯାଉଥିଲେ କିନ୍ତୁ•••

————

Digitized by srujanika@gmail.com

## —ଗୁରୁ—

"ଅରତ, ତୁ କୁଆଡ଼େ ଯାଉଛୁ ?"

ଖୁଡ଼ୀମାଙ୍କର ପ୍ରଶ୍ନରେ ଅରତ ଉତ୍ତର ଦେଲା, "ପ୍ରଣବ ଘରକୁ ଯାଉଛି ପରା ! ସାର୍ ଅସିଛନ୍ତି ଆଜି—"ଶେଷୋକ୍ତ କଥାଟା ତାର ଅଜ୍ଞାତସାରରେ ତୁଣ୍ଡରୁ ବାହାରିପଡ଼ିଲା । ଉମା କ୍ଷଣକାଳ ନୀରବ ରହି କହିଲେ, "ଅରତ, ସାର୍ ଅସିଛନ୍ତି ବୋଲି ତୋର କଣ ନିତାନ୍ତ ଯିବା ଦରକାର ? ଦେଖ୍, ଅରତ···ତୁ ତ ବୁଅ ନୋହୁ···ଏପରି ମିଳା-ମିଶାଟା ଭଲ ଦିଶୁନାହିଁ" ଉମା କଥାଗୁଡ଼ାକ ତୋକିଲାପରି କହିଲେ, "ତୁ ଅଜି ଯା ନା, ବରଂ ମୋ ପାଖେ ବସି ମୋଜା ବୁଣାଟା ଶିଖିପକା —ରବି ପାଇଁ—ଅଣେ ଲୁଞ୍ଝି ଅଉ ପଶମ—"

ଦୁଇମାସ ହେଲା, ବିବାହିତ ଜୀବନ କଟାଇବାର, ପାର୍ଘ ଅଠର-ବର୍ଷପରେ ଉମାଙ୍କର ଗୋଟିଏ ପୁତ୍ରସନ୍ତାନ ହୋଇଛି । ଆଦର କରି ଅରତ ତା ନାଁ ଦେଇଛି" ରବୀନ୍ଦ୍ରନାଥ" । ଉମାଙ୍କ କଥା ଶୁଣି ଅରତ କ୍ଷୁଣ୍ଣ ମନରେ ପିଲାଇ ଧରି ତାଙ୍କ ନିକଟରେ ବସିଲା । ତା'ର ମନ ଉମାଙ୍କ ବିରୁଦ୍ଧରେ ମୁଣ୍ଡ ଟେକି ଉଠିଲା ; "କାହିଁକି ଖୁଡ଼ୀ ମା ତାକୁ ମନା କଲେ ! ପ୍ରଣବ ସାର୍‌ଙ୍କ ସଙ୍ଗେ କଥାବାର୍ତ୍ତା ହେଉଛି; ଅଥଚ ସେ କଥାବାର୍ତ୍ତା ହେଲେ ଦୋଷ ହୋଇଯିବ ? ନା ! ନିଶ୍ଚୟ ଯିବ ସେ !

ଖୁଡ଼ୀ ମାଙ୍କୁ କହିବାକୁ ଯାଇ ସେ ଅଉଥରେ ଚୁପ ହୋଇଗଲା । "ନା, ଖୁଡ଼ୀ ମାଙ୍କ ମନରେ କଷ୍ଟ ଦେବା ଆଉ ଉଚିତ ନୁହେଁ ।"

Digitized by srujanika@gmail.com

ଧୀରେ ଧୀରେ ସେ ବୁଣିବାକୁ ଲାଗିଲା । କିନ୍ତୁ ତା ମନଟା ଯାଇ ପଡ଼ିରହିଲା ପ୍ରଣତି ଘରେ । ପ୍ରଣତି ଆଉ ସାର୍ କଣ କଥା ହେଉଥିବେ କେଜାଣି ··ଅଚ୍ଛା, ସୁରେଶ ବାବୁ ତାକୁ ଡକେଇ ପଠେଇବେ···ତାହୁଁ ପ୍ରଣତି ତ ଥରେ ଡାକି ଆସିଲାନି···"

"ଆରତି —ବୁଣାଟା ଯେ ଭୁଲ୍ ହୋଇଯାଉଛି !"

ଖୁଡ଼ୀ ମା ଙ୍କ କଣ୍ଠସ୍ୱରରେ ଚମକି ଆରତି ଦେଖିଲା, ସତରେ ତା' ବୁଣାଟା ଏକବାରେ ଭୁଲ୍ ହୋଇଯାଇଛି ! ପଶମଯାକ ଫିଟାଇ ହାତରେ ଗୁଡାଉ ଗୁଡ଼ାଉ ଆରତି କହିଲା, "ଏ ପଶମ ବୁଣାଟା ବଡ଼ କଷ୍ଟ ଖୁଡ଼ୀ ମା—ଟିକେ ଯଦି ଭୁଲ୍ ହୋଇଗଲା ତ ସାରାଗୋଟା ଧାଡ଼ିକଯାକ ଫିଟାଅ ! ମାଲୋ, ମୁଁ ଏଇଟା କରିପାରିବିନି—"

କିନ୍ତୁ ଖୁଡ଼ୀ ମା ଙ୍କ ଜଗରରେ ଆରତିକୁ ବୁଣିବାକୁ ପଡ଼ିଲା । ଆଉ ପ୍ରତି ଧାଡ଼ିରେ ତାର ଭୁଲ ହେବାକୁ ଲାଗିଲା । ଶେଷକୁ ଖୁଡ଼ୀ ମା ବିରକ୍ତ ହୋଇ କହିଲେ—"ଯା ଆରତି, ତୋ ହାତରେ କିଛି ହେବନାହିଁ । ତୋ ସାଙ୍ଗରେ ପ୍ରଣତି କେଡ଼େ ସୁନ୍ଦର ସବୁ ବୁଣି ଯାଉଛି, ଆଉ ତୋ ତ ହାତରେ କିଛି ନାହିଁ · ଯା, ପଢ଼ାଘରେ ଯାଇ ବସ୍—"

ଆରତି ଆଶା କରିଥିଲା—ଖୁଡ଼ୀ ମା ଏଥର ବୋଧହୁଏ ଅନୁମତି ଦେବେ, ପ୍ରଣତି ଘରକୁ ଯିବାପାଇଁ; କିନ୍ତୁ ପ୍ରଣତିଘର ପରିବର୍ତ୍ତେ ପଢ଼ାଘରକୁ ଯିବା ଆଦେଶ ଶୁଣି ଯନ୍ତ୍ର ଚାଳିତେ, ବିଷଣ୍ଣ ମୁହଁରେ ବାହାରି ଆସିଲା ତାର ପଢ଼ାଘରକୁ ।

ଆରତି ଚାଲିଗଲା ପରେ ଉମା ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇଲେ । ଛିଃ, ଛିଃ ! ତାଙ୍କର ଥରେ ଉଚିତ ଥିଲା ଆରତିର ପ୍ରଣତି ଘରକୁ

Digitized by srujanika@gmail.com

ନାଇଁ ସୁରେଶ ସହିତ ମିଳାମିଶାଟା ବନ୍ଦ କରିବାକୁ । କିନ୍ତୁ ଆଜି ଅରତିର ଭାବ-ଭଙ୍ଗୀ ଦେଖି ତାଙ୍କର ମନେହେଲା, କଥାଟା ଅନେକ ଦୂର ଗଡ଼ି ଯାଇଛି ବୋଧହୁଏ—ଏବେ ବନ୍ଦ କଲେ କଣ ଆଉ ଫଳ ମିଳିବ ?”

ବର୍ତ୍ତମାନ ସେ ଉଷାଙ୍କ ନିକଟରେ କେମିତି ମୁହଁ ଦେଖାଇବେ ? ଉଷାଙ୍କର ସେଦିନର କଥା ମନେ ପଡ଼ିଲା । ଉଷା କହିଥିଲେ, “ଉମା କିଛି ଭାବିବୁ ନା ତୁ—ଅରତିକୁ ସୁରେଶ ସଙ୍ଗେ ମିଶା ମିଶି କରିବାକୁ ସୁଯୋଗ ଦେ ନା—ଦେଖ୍ ଆମେ ଦୁଇଜଣ ଯେପରି ଶେଷରେ ଗୋଟିଏ ଜାଲରେ ପଡ଼ି ନ ଯାଉ···ବୟସର ଧର୍ମ ତ, କିଏ ରୋଧି ପାରିବ ? ଆଉ ତୁ ତ ଜାଣିଛୁ ଯେ, ମୋର ପ୍ରଣୟ ଆଉ ତୋ ଅରତି କୁ ତୁଳନା କଲେ କିଏ ବଳି ପଡ଼ିବ । ମନରେ ମୋର ଭାରି ଆଶା ଅଛି···ସୁରେଶ ପ୍ରଣୟର ହାତ ଧରୁ । ଏଥର ତ ତୁ ସବୁ ବୁଝିପାରୁଥିବୁ; ଆଉ ଅଧିକ କଣ ମୁଁ କହିବି ? ଭାବିବୁନି କିଛି ଉମା, ମୋ କଥା ଶୁଣି, ତୋ ଆଗରେ କହିବା ଛଡ଼ା ଆଉ କିଛି ଉପାୟ ଦିଶିଲାନି !”

ଉମା ଶୁଣି ପ୍ରଥମେ ସ୍ତମ୍ଭିତ ହୋଇଯାଇଥିଲେ । ତାପରେ ସଙ୍ଗି-କଥାର ସତ୍ୟତା ବୁଝି ତାଙ୍କୁ କର୍ତ୍ତବ୍ୟ ପ୍ରତିଶ୍ରୁତି ଦେଇଥିଲେ । ସେ ଦିନଠାରୁ ସେ ଭାବ ସ୍ଥିର କରିଛନ୍ତି, ଅରତିକୁ ମନା କରିଦେବେ ସୁରେଶସଙ୍ଗେ କଥାବାର୍ତ୍ତା ହେବାକୁ; କିନ୍ତୁ ଅରତିର ଆଗ୍ରହବ୍ୟଗ୍ର ମୁହଁକୁ ଦେଖି କିଛି କହି ପାରନ୍ତି ନାହିଁ । ଆଜି ଅରତିର ବିଷଣ୍ଣ ମୁହଁ-ଟିକୁ ଦେଖି, ସେ ବ୍ୟଥିତା ହେଲେ; କିନ୍ତୁ ବାଧା ନ ଦେଲେ ଯେ ଉଷାଙ୍କ ଆଶାର ସୌଧ ଧୂଳିସାତ୍ ହୋଇଯିବ ! ପ୍ରଣୟ ଓ ସୁରେଶର ବିବାହରେ ଅରତି କଣ ଆଘାତ ପାଇବ ? ଆଶଙ୍କାରେ ତାଙ୍କ ମନ ଭରିଗଲା ।

Digitized by srujanika@gmail.com

କିଛି ସମୟପରେ ଆରତିର ସନ୍ଧାନରେ ଆସି ସେ ଦେଖି ପାରିଲେ, ତାଙ୍କର ଅଦରଣୀ କନ୍ୟା ଟେବୁଲ୍ ଉପରେ ମୁଣ୍ଡ ରଖି ଗାଢ଼ ନିଦ୍ରାରେ ଅଭିଭୂତା । ମୁହୂର୍ତ୍ତିକ ଭିତରେ ସବୁ ଆଶଙ୍କା କୁଆଡ଼େ ଉଭେଇଗଲା—ଆରତିର ନିଷ୍କଲଙ୍କ ମୁଖଚନ୍ଦ୍ରମାକୁ ଚାହିଁ ଉମା ବୋଧହୁଏ ଜଗତ ଭୁଲିଗଲେ । ସେ ତତ୍କ୍ଷଣାତ୍ ଅଦୃଶ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ଦୁଇହାତ ଏକାଠି ଯୋଡ଼ି ମନେ ମନେ କହିଲେ, "ପ୍ରଭୁ, ଆରତି ମୋର ସୁଖୀ ହେବ—"

ଉମା ଜାଣିପାରିଲେନି—ତାଙ୍କ ଆଶଙ୍କାର ମୂଳ ସୁରେଶର ମୁହଁ ଭାବି ଭାବି ଆରତି ନିଜ ଅଜାଣତରେ ଶୋଇ ପଡ଼ିଥିଲା—ଅନ୍ତ ବର୍ତ୍ତମାନ୍ ନିଦରେ ସେ ସୁଖସ୍ୱପ୍ନ ଦେଖୁଥିଲା । ସୁରେଶ ସଙ୍ଗେ ସେ ମିଳିତ ହୋଇଛି ।"

× × × ×

"ଆରତି କାହିଁକି ଆସିଲେନି ?"

ସୁରେଶର ପ୍ରଶ୍ନରେ ପ୍ରଣତିର ମନେପଡ଼ିଲା—"ସତରେ ତ— ଆରତି ଆସିନି···"ସୁରେଶ ଏଇସମୟରେ କହିଲା, "ପ୍ରଣତି, ଆରତିଙ୍କୁ ଡାକଦିଅ—ସେ ନ ଆସିଲେ, ଯାଅ ଶୀଘ୍ର ଡାକି ନେଇ ଆସ ।"

ପ୍ରଣତି ଉଠିପଡ଼ି ଘରୁ ବାହାରିଆସିଲା ।

ମା' ପଚାରିଲେ, "ପ୍ରଣତି, କୁଆଡ଼େ ଯାଉଛୁ ?"

Digitized by srujanika@gmail.com

ଅରୁଣା ଟିକେ ରହି କହିଲା, "ସାର୍, କାଲି ଖୁଡ଼ୀ-ମା ଗୋଟେ କାମ କରିବାକୁ ଦେଲେ । ତେଣୁ ମୁଁ ଯାଇପାରିଲି ନାହିଁ ।"

"ଅରୁଣା, ଏଥର ଆଉ କେବେ ନ ଆସି ରହିବନାହିଁ, ବୁଝିଲ?" କଥାଟା ଆସ୍ତେ କହିଦେଇ ସୁରେଶର ମୁହଁ ରଙ୍ଗ ହୋଇଗଲା । ସେ ବ୍ୟସ୍ତ ହୋଇ ଅନ୍ୟ ଗୋଟିଏ ଛାତ୍ରକୁ ବୁଝାଇବା ବାହାନାରେ ଅରୁଣା ନିକଟରୁ ଦୂରେଇ ଗଲା ।

ଅରୁଣାର ମୁହଁ ମଧ୍ୟ ଆରକ୍ତ ହୋଇ ଯାଇଥିଲା । ସୁରେଶର ଦାବୀ ଅନାୟାସ ହେଲେ ମଧ୍ୟ ତାକୁ ଭାରି ଭଲ ଲାଗିଲା ।

ସେଦିନ ପ୍ରକୃତି କଲେଜକୁ ଆସିନାହିଁ । ଘଣ୍ଟା ବାଜିବାକୁ କିଛି ସମୟ ଅଛି, ଭାରି ଜୋର୍‌ରେ ବର୍ଷା ହେବାକୁ ଆରମ୍ଭ କଲା । ଛୁଟି ହୋଇଗଲା କିନ୍ତୁ ବର୍ଷାର ବିରାମ ନାହିଁ । ଅରୁଣା କିପରି ଘରକୁ ଯିବ ଭାବୁଥାଲେନ, ଯୋଗକୁ ଆଜି ଆସିଲାବେଳକୁ ଛତାଟା ଆଣିବାକୁ ସେ ଭୁଲିଯାଇଛି—କଣ କରିବ ! ଖୁଡ଼ୀ-ମା ବା ଯେ କାହାକୁ ପଠାଇବେ ସେ ଆଶା ନାହିଁ; କାରଣ ଗୃହକର୍ତ୍ତା ଅସୁସ୍ଥ—ପୁଷ୍ପାକୁ ଛୁଟିନେଇ ଯାଇଛନ୍ତି ତାଙ୍କୁ । ଶେଷକୁ ଅନନ୍ୟୋପାୟ ହୋଇ ବର୍ଷାରେ ଓଦା ହୋଇ ଚାଲି ଯିବାକୁ ଠିକ୍ କଲା ।

କଲେଜ ଗେଟ୍‌ରେ ଠିଆ ହୋଇ ଏହିପରି ଭାବୁଛି, ଏପଟେ ସାମ୍ନାରେ ହଠାତ୍ ସୁରେଶ ଆସି କହିଲା—"ତୁମେ ଘରକୁ ଯାଉନାହଁ କି ହେ—"

Digitized by srujanika@gmail.com

ଆରତି ତାର ସେହି ମନୋମୁଗ୍ଧକର ଦୃଷ୍ଟିରେ ସୁରେଶ ଆଡକୁ ଚାହିଁ କହିଲା, "ସାର୍, ଛତାଟା ଆଜି ଆଣିନି—କପଡା ଭିଜିବ ଭାବୁଛି ।"

ସୁରେଶ ଟିକାଏ ଭାବି କହିଲା, "ମୋ ସଂଗେ ଯାଇ ପାରିବ ତ? ତାହେଲେ ମୁଁ ତୁମକୁ ଘରେ ଛାଡିଦେଇ ଆସିବି—"

ସୁରେଶ ସଙ୍ଗରେ ନ ଯିବାର କୌଣସି କାରଣ ଆରତି ଦେଖି-ପାରିଲା ନାହିଁ । ସେ ତତ୍‌କ୍ଷଣାତ୍ ଆନନ୍ଦରେ ସମ୍ମତ ହୋଇଗଲା । ଶତ ଶତ ଛାତ୍ରଙ୍କ ଦୃଷ୍ଟି ସମକ୍ଷରେ ଆରତିକୁ ସଙ୍ଗରେ ନେଇ ଚାଲିବାକୁ ସୁରେଶ ମନେ ମନେ କୁଣ୍ଠିତ ହେଲା—କିନ୍ତୁ ଉପାୟ ନାହିଁ । ସେ ଯଥାସମ୍ଭବ ଦ୍ରୁତଗତିରେ କଲେଜ୍ ହତା ଭିତରୁ ବାହାରକୁ ଚାଲି ଆସିଲା । ସୁରେଶ ସହିତ ସମତାଳ ଗତିରେ ଅଗ୍ରସର ହେବାକୁ ଆରତି କ୍ଳାନ୍ତ ହୋଇପଡ଼ିଲା । ବାହାରକୁ ଆସିଲାପରେ ସେ କହିଲା, 'ସାର୍' ଆପଣ ଏତେ ଜଲ୍‌ଦି ଚାଲିଲେ, ମୁଁ କପରି ଯିବି ?"

ସୁରେଶ ଲଜ୍ଜିତ ହୋଇ ଧୀରେ ଧୀରେ ଚାଲିଲା । ଗୋଟିଏ ଛତାତଳେ ଦୁଇଜଣ ଲୋକଙ୍କୁ ଦୁଇକଡ଼ରୁ ଅଳ୍ପ ଅଳ୍ପ ଓଦା କରୁଥିଲେ । ସମୟ ସମୟରେ ଆରତିର ଅଙ୍ଗସ୍ପର୍ଶ ପାଇ ସୁରେଶ ଶିହରି ଉଠୁଥାଏ । ଆରତି ତାର ବାଁ ପାଖରେ ରହି ଚାଲୁଥିଲା । ବେଶ୍ ଜୋରରେ ପବନ ଆଉ ବର୍ଷା ହେଉଥିଲା ।

ଆରତିର ଦୁକୂଳ ଅଞ୍ଚଳଟା ଉଡ଼ି ଆସି ଅର୍ଦ୍ଧ ଆବୃତ କରିଦେଲା ସୁରେଶର ପିଠିକୁ । ବାଁ ହାତରେ ଛତାଟା ଧରି ପଛପଟକୁ ନେଇ ସୁରେଶ ଅଞ୍ଚଳଟାକୁ ଠେଲି ଦେଲା; କିନ୍ତୁ ଆଉ ଥରେ ଦୁଷ୍ଟ ପବନର ଦୌରାତ୍ମ୍ୟରେ ଅଞ୍ଚଳଟା ଆସି ତା ଦେହରେ ଗୁଡ଼ାଇ ହୋଇଗଲା । ଆରତିର କିନ୍ତୁ ଏ ସବୁଥିକୁ ନଜର ନଥାଏ; ବର୍ଷା-ପବନ ଭିତରେ ଏହିପରି ଚାଲିବାକୁ ତାକୁ ଭାରି ଆନନ୍ଦ ଲାଗୁଥାଏ ।

Digitized by srujanika@gmail.com

"ଧାର୍, ଛତା ଉପରୁ କି ସୁନ୍ଦର ଭାବରେ ପାଣି ଗୁଡ଼ାକ ବୋହି ଯାଉଛି···" ସେ ଆଗ୍ରହରେ କହିଲା । 'ସାର୍' ଙ୍କ କାନରେ କିନ୍ତୁ ସେ କଥା ପଶିଲା ନାହିଁ; ସେ ସେତେବେଳକୁ ଆରତିର ସୁନ୍ଦର ଅଞ୍ଚଳର-ସୁଦୃଢ଼ ନ ହେଲେ ବି—ସୁନ୍ଦର ଆବେଷ୍ଟନୀରୁ ମୁକ୍ତ ହେବା ଚେଷ୍ଟାରେ ବ୍ୟସ୍ତ । ଆରତି ପୁଣି ପଚାରେ, "ସାର୍, ଛତାଟା କାହିଁକି ଏପରି ଡାହାଣ ହାତରୁ ବାଁ ହାତକୁ, ବାଁ ହାତରୁ ଡାହାଣ ହାତକୁ ନେଉଛନ୍ତି ? ହାତକୁ କଣ କାଟୁଛି ?"

ସୁରେଶ ଅପ୍ରସ୍ତୁତ ହୋଇ କହିଲା, "ନା, ଆରତି···ହାତକୁ କାହିଁକି କାଟିବ ?"

"ତେବେ ସାର୍ ଏମିତି କାହିଁକି କରୁଛନ୍ତି !" ଆରତି ପଚାରିଲା । ସୁରେଶ ଶୁଣି ନ ଶୁଣିଲା ପରି ରହିଗଲା; କଣ ବା ଉତ୍ତର ଦେବ ସେ ! ପଛଆଡ଼ୁ ପବନର ଜୋରରେ ଉଡ଼ି ଆସି ଅଞ୍ଚଳଟା ତା କାମିଜ ଉପରେ ଲାଗିଯାଉଛି । ଛିଃ ! କିଏ ଦେଖିଲେ କଣ ଭାବିବ ? କି କାଣ୍ଡଜ୍ଞାନ ହୀନା ଝିଅଟି ! ନିଜ ଲୁଗାଟାକୁ ହାତରେ ଟାଣି ଧରି ରଖିବାକୁ ଯେତେ ଥରେ ହେଲେ ଖିଆଲ ହେଉନାହିଁ, ବ୍ୟତିବ୍ୟସ୍ତ ହୋଇ ସୁରେଶ ସୁନ୍ଦର ଅଞ୍ଚଳଟିର ଗାଢ଼ ଆଲିଙ୍ଗନରୁ ମୁକ୍ତ ହେବାର ଅନ୍ୟ କୌଣସି ଉପାୟ ନ ଦେଖି ଶେଷକୁ କହିଲା, ଆରତି—ତୁମ ଲୁଗାକାନିଟା ଧରିନିଅ—ପବନରେ ଉଡ଼ି ଓଦା ହୋଇଯାଉଛି !"

ଠିକ୍ ଏହି ସମୟରେ ପବନରେ ଅଞ୍ଚଳଟା ଉଡ଼ି ଆସି ସୁରେଶର ଦେହକୁ ଅଭିଭୂତ କରି ପକାଇଲା । ନିଜର ଅଞ୍ଚଳଟିକୁ ଧରିବାକୁ ଯାଇ ଆରତିର ଦୃଷ୍ଟି ପଡ଼ିଲା, ସୁରେଶ ବାଁ ହାତରେ ଛତାଟିକୁ ଧରି ଡାହାଣ ହାତରେ ଅଞ୍ଚଳଟିକୁ ଖୋଲି ଦେଉଛି ! ବୁଦ୍ଧିମତୀ ଏତେବେଳେ ଯାଇ ବୁଝିଲା— ସୁରେଶ ଏତେ କ୍ଷଣ ଛତାଟିକୁ ଏ ହାତରୁ ସେ ହାତ କାହିଁକି କରୁଥିଲା ! ଉଚ୍ଛ୍ୱାସ୍ୟ କୌଣସି ମତେ ସମ୍ଭାଳି ନ ପାରି ଖିଲ୍ ଖିଲ୍ ହୋଇ ହସି

Digitized by srujanika@gmail.com

ଉଠିଲା କହିଲା, "ସାର୍, ମୋ ଲୁଗାକାନିଟା ଆପଣଙ୍କୁ ସେତେବେଳୁ ହଇରାଣ କରୁଛି — ନାଇଁ ?"

ଆରତିର ହସ ଭରା ଥଟ୍ଟାରେ ସୁରେଶ ଅଳ୍ପ ଅପ୍ରସ୍ତୁତ ହୋଇପଡ଼ିଲା । ତାର ସୁଗୌର ମୁହଁଟି ଆରକ୍ତ ହୋଇଗଲା । ସେ କିଛି ଉତ୍ତର ନ ଦେଇ ଚୁପ୍ ହୋଇ ରହିଲା । ଆରତି ଶାଢ଼ିର ଅଞ୍ଚଳଟିକୁ ହାତରେ ଚପି ଧରିଲା ।

ହଠାତ୍ ଝଲକାଏ ପବନ ଅନ୍ୟମନସ୍କ ସୁରେଶର ଶିଥିଳ ମୁଷ୍ଟିରୁ ଛତାଟିକୁ ଉଡ଼ାଇ ନେଇଗଲା । ସୁରେଶ ବ୍ୟସ୍ତ ହୋଇ ଦୌଡ଼ିଗଲା ଛତା ପଛରେ କିନ୍ତୁ ହାୟ ! ସେ ଛତାର ଯେତେ ନିକଟକୁ ଯାଉଥାଏ ଛତାଟି ସେତେ ଦୂରକୁ ଉଡ଼ିଯାଉଥାଏ । ସୁରେଶର ଅବସ୍ଥା ଦେଖି, ସ୍ଥାନ କାଳ ପାତ୍ର ଭୁଲି ଆରତି ପିଲାଙ୍କ ପରି ହସିବାକୁ ଲାଗିଲା ଏବଂ ଧୀରେ ଧୀରେ ଅଗ୍ରସର ହେଲା ।

ନିଜର ଅକର୍ମଣ୍ୟତା, ତାପରେ ପୁଣି ଆରତିର ବିଦ୍ରୂପ ଭରା ହସ — ସୁରେଶ ମନେ ମନେ ଭାରି ରାଗି ଗଲାଣି । ଭଗବାନଙ୍କ କୃପାରୁ ଛତାଟି ଗୋଟିଏ ଅଶୋକ ଗଛ ମୂଳରେ ବାଧା ପାଇ ରହିଗଲା । ଛତାଟି ଧରି ସୁରେଶ ଆରତି ନିକଟକୁ ଫେରିଆସିଲାବେଳକୁ ଦୁଇଜଣଯାକ ଘର୍ମାକ୍ତ ଓଦା ହୋଇଗଲେଣି । ଦୁଇଜଣଯାକ ପୂର୍ବ ପରି ଚାଲୁ ଚାଲୁ ସୁରେଶ ଖୁବ୍ ଧୀରେ କହିଲା, "ଆରତି ଉଚ୍ଚ ମଣିଷର ଏପରି ଦୁରବସ୍ଥା ଦେଖି ହସିବାଟା କଣ ଉଚିତ ?"

ଆରତି ସୁରେଶର ମନୋଭାବ ବୁଝିପାରିଲା ।••ଦୁଃଖିତ ହୋଇ କହିଲେ, "ସାର୍, ମତେ କ୍ଷମା କରନ୍ତୁ । ହସିବାଟା ମୋର ଗୋଟିଏ ପ୍ରଧାନ ସ୍ୱଭାବ, ସ୍ୟାର୍ । ମଣିଷର ଦୁଃଖ ଦେଖିଲେ ହସ ମାଡ଼େ, ତାର ବଡ଼

Digitized by srujanika@gmail.com

ଦେଖିଲେ ବହୁତ ମାଡ଼େ । କଣ କରିବ ? ବୁଢ଼ୀ ମାଙ୍କଠାରୁ ଏଥିପାଇଁ କେତେ ଗାଳି ଖାଇଛି ।”

ଆରତିର ମାଧୁରୀ ଭରା କଥାଗୁଡ଼ିକ ଶୁଣି ସୁରେଶର କ୍ରୋଧ କୁଆଡେ ଉଭେଇଗଲା । ସେ ଶାନ୍ତକଣ୍ଠରେ କହିଲା, "ଆରତି, ମଣିଷର ବିପଦ ସମୟରେ ହସିଲେ ତାକୁ ଭାରି ଆଘାତ ଲାଗେ ବୁଝିଲ ? ତେଣୁ ତୁମେ ସେ ସମୟରେ ହସିବାଟା ବନ୍ଦ କରିବାକୁ ଚେଷ୍ଟାକର—”



Digitized by srujanika@gmail.com

—ଛଅ—

ଦୁଇଜଣଯାକ ରାମବାବୁଙ୍କ ଘରେ ପହଞ୍ଚିଲେ । ସୁରେଶ ଫେରି-ଯିବାକୁ ଚାହୁଁଥିଲା । କିନ୍ତୁ ଅରଢର ଜିଦ୍‌ରେ ଘର ଭିତରକୁ ଯିବାକୁ ବାଧ ହେଲା । ରାମବାବୁ ଘରେ ନଥିଲେ । ବୈଠକଖାନାରେ ସୁରେଶକୁ ଚଉକିରେ ବସିବାକୁ ନିର୍ଦ୍ଦେଶ ଦେଇ ଅରଢ ପର୍ଦ୍ଦା ଠେଲି ଘର ଭିତରକୁ ଚାଲିଗଲା । ସୁରେଶ ଡ୍ରଇଂ ରୁମ୍‌ଟି ଦେଖିବାକୁ ଲାଗିଲା । ଚାରିଆଡ଼େ ଲକ୍ଷ୍ୟକରି ଦେଖିଲେ ମାଲିକଙ୍କର ରୁଚିର ପରିଚୟ ମିଳେ । କାନ୍ଥରେ ବଡ଼ ବଡ଼ ଚାରିଟା ତୈଳ-ଚିତ୍ର ଝୁଲୁଛି । ଗୋଟିଏ ଅରଢର ଆଉ ଗୋଟିଏ ରାମବାବୁଙ୍କର, ସେ ଦୁଇଟା ସୁରେଶ ଚିହ୍ନି ପାରିଲା । ରମଣୀର ଚିତ୍ରଟି ବୋଧହୁଏ ଅରଢର ମା'ଙ୍କର, ଆଉ ଚତୁର୍ଥଟି କାହାର ସୁରେଶ ତା ଅନୁମାନ କରିପାରିଲା ନାହିଁ । ଉନ୍ନତ ଲଲାଟ, ଖଡ୍ଗ ନାସିକା, ଦେବୋପମ କାନ୍ତି ସେହି ଯୁବକଙ୍କ ଛବି ସହିତ ଅରଢର ରୂପର ଅନେକ ସାଦୃଶ୍ୟ ଅଛି ! ନୟନର ଦୃଷ୍ଟି ମଧ୍ୟ ଠିକ୍ ଅରଢର ରହସ୍ୟଭରା ଦୃଷ୍ଟି ପରି ଥରେ ସେ ଅରଢର ଛବିଟି ଆଡ଼କୁ ଚାହିଁଲା—ତାପରେ ଯୁବକଙ୍କ ଚିତ୍ରଟି ଆଡ଼କୁ ଚାହିଁଲା । ଦୁଇଟି ଚିତ୍ର ଭିତରେ ଅତି ସାମାନ୍ୟ ପ୍ରଭେଦ ଅଛି; ପ୍ରଭେଦଟା ହେଉଛି, ଅରଢର ସ୍ତ୍ରୀଜନୋଚିତ କୋମଳତା ତା'ସୁକୁମାର ମୁହଁଟିକୁ ଘେରି ରହିଛି; ଆଉ ଯୁବକଙ୍କ ମୁହଁରେ ପୁରୁଷୋଚିତ ଗମ୍ଭୀର ଦୃଢ଼ ଭାବ । ସୁରେଶ ଛବି ଦୁଇଟିର ସାଦୃଶ୍ୟ ଦେଖି ବିସ୍ମିତ ହେଲା ।

Digitized by srujanika@gmail.com

"ସାର୍—କଣ ଦେଖୁଛନ୍ତି କି ?"

ଅଜନ୍ତାର ପ୍ରଶ୍ନରେ ମୁହଁ ଫେରାଇ ସୁରେଶ ତାକୁ ଦେଖି ସ୍ତବ୍ଧ ହୋଇଗଲା—"କି ସୁନ୍ଦର !"

ଦୁଆର ମୁହଁରେ ଅଜନ୍ତା ଠିଆ ହୋଇଛି । ଯା' ଭିତରେ ସେ ଲୁଗା ବଦଳାଇ ଗୋଟିଏ ଦୁଧପରି ଧୋବ ଶାଢ଼ୀ ପିନ୍ଧିଛି—ଧଡ଼ିଟା ତାର ଗାଢ଼ କୃଷ୍ଣବର୍ଣ୍ଣ । ଠିକ୍ ସେହିପରି ବ୍ଲାଉଜ୍ । ସୁନୀଳ ଶାଢ଼ୀର ତୀବ୍ର ଉଜ୍ଜ୍ୱଳତା ଠାରୁ ଶ୍ୱେତ ସ୍ନିଗ୍ଧ ଶାଢ଼ୀଟି ତାହାର ଶୋଭା ଯେପରି ଶତଗୁଣରେ ବର୍ଦ୍ଧିତ କରିଦେଇଛି । ମୁଣ୍ଡବାଳ ଗୁଡ଼ିକ ବୋଧହୁଏ ଓଦା ହୋଇଯାଇ ଥିବାରୁ ଘରକୁ ଆସି ସେ ଗୁଡ଼ିକ ଖୋଲିଦେଇଛି ସେ । ଅଧିକାଂଶ ପିଠି ଉପରେ ସମୁଦ୍ରର ଢେଉ ପରି ଲୋଟିଯାଇଛି । ଆଉ ଅଳ୍ପ ଘନକୃଷ୍ଣ କେଶରାଶି ପଡ଼ିଛି ବକ୍ଷ ଉପରେ । କି ଆଶ୍ଚର୍ଯ୍ୟ ସୁନ୍ଦର ! ଅଜନ୍ତାର ଦେବୀ ପ୍ରତିମା ସମ ମୂର୍ତ୍ତି ଦେଖି ସୁରେଶ ମୋହିତ ହୋଇଗଲା । ମୁଗ୍ଧ ଦୃଷ୍ଟିରେ ସେ ଦେଖିବାକୁ ଲାଗିଲା, ତାର ଅନ୍ତରର ଇପ୍ସିତା ଅଜନ୍ତାର ଅପୂର୍ବ ଶୋଭା ।

ସୁରେଶର ସେ ଦୃଷ୍ଟି ସମ୍ମୁଖରେ ଅଜନ୍ତା ବିଚଳିତ ହୋଇପଡ଼ିଲା । କାହିଁ, ସୁରେଶ ତ କେବେହେଲେ ଏପରି ଚାହାଁନାହାଁନ୍ତି—ଆଜି କାହିଁକି ତାର ଏପରି ଦୃଷ୍ଟି । ଅସ୍ୱଚ୍ଛନ୍ଦ ଚିତ୍ତରେ ସେ ମୁଣ୍ଡପୋଛି ଆଗେଇ ଆସିଲା, ତାପରେ ହାତରେ ଧରିଥିବା, ତେଲ, ସେଣ୍ଟ, ଲୁଗା ଇତ୍ୟାଦି ଟେବୁଲ୍ ଉପରେ ରଖୁ ରଖୁ ନମିତ କଣ୍ଠରେ କହିଲା, "ସାର୍ ଲୁଗା ପାଲଟି ପକାନ୍ତୁ—ଏକାବେଳେକେ ତ ଓଦା ହୋଇଯାଇଛନ୍ତି !"

Digitized by srujanika@gmail.com

ଅରୁଣର କଣ୍ଠସ୍ୱର ଶୁଣି ସୁରେଶ ଯେପରି ବାସ୍ତବ ଜଗତକୁ ଫେରିଆସିଲା । କଣ୍ଠସ୍ୱର ସହଜ କରି ସେ କହିଲା, "ନା, ଅରୁଣ— ଏ ସବୁର କିଛି ଦରକାର ନାହିଁ—ମୁଁ ତ ଏହିକ୍ଷଣି ଚାଲିଯିବି, ଅଢ଼ଥରେ ତ ପୁଣି ଓଦା ହେବାକୁ ପଡ଼ିବ, ଏବେ ଲୁଗା ବଦଳାଇଲେ ଲାଭ କଣ ?"

ଅରୁଣ ଏଥର ତାର ଉଜ୍ଜ୍ୱଳ ଦୃଷ୍ଟି ସୁରେଶର ସ୍ଥିର ଦୃଷ୍ଟି ଉପରେ ସ୍ଥାପନ କରି କହିଲା, "ନା, ସେ ତ ହେବ ନି—ଆପଣ ଲୁଗା ପାଲଟି ପକାନ୍ତୁ···ବର୍ଷା ନ ଛାଡ଼ିଲା ଯାଏଁ ଆପଣ କଦାପି ଯାଇ ପାରିବେନି···ଖୁଡ଼ୀମା କହିଛନ୍ତି ଜଳଖିଆ ଖାଇସାରି ଯିବେ । ଶେଷକଥାଟା ସେ ମିଛରେ କହିଲା, କାରଣ ସେ ନିଜେହିଁ ପ୍ରଥମେ ସୁରେଶକୁ ଜଳଖିଆ ଦେବା ପ୍ରସ୍ତାବ କରିଥିଲା ମାଙ୍କ ଆଗରେ ।

ସୁରେଶ ନୀରବରେ ଅରୁଣର ଦାବୀକୁ ସ୍ୱୀକାର କରିନେଲା । ଏହି ବର୍ଷାମୁଖର ମନୋମୁଗ୍ଧକର ସନ୍ଧ୍ୟାରେ ଅରୁଣର ସଙ୍ଗ ଛାଡ଼ିଯିବାକୁ ସେ ଆଦୌ ପ୍ରସ୍ତୁତ ନ ଥିଲା । ତା' ସଙ୍କେତ ଦେଖି ପାଖ କୋଠରୀକୁ ଯାଇ ସେ ଲୁଗା ବଦଳାଇ ଆସିଲା ।

କିଛି କ୍ଷଣ ଦୁହିଁଙ୍କ-ପାଇଁ ନୀରବ ରହିଲେ । କିଏ କିପରି ସେ କଥା ଆରମ୍ଭ କରିବ, ତାହା ଠିକ୍ କରିପାରୁନଥିଲେ ସେମାନେ । ବର୍ଷାର ମାଦକତା ଯେପରି ଦୁହିଁଙ୍କୁ ବିହ୍ୱଳ କରିପକାଇଥିଲା । ପବନରେ ଓଦା ମାଟିର ଗୋଟାଏ ସୁମିଷ୍ଟ ଗନ୍ଧ ! ଝରକାର କାଚ ନିର୍ମିତ ଦ୍ୱାର ଉପର ଦେଇ ଛୋଟ ଜଳଧାର ବହିଯାଉଛି ସେହିଆଡ଼କୁ ଚାହିଁ ରହିଛି ଅରୁଣ,

Digitized by srujanika@gmail.com

ନୀରବତା ଭାଙ୍ଗିବା ପାଇଁ ଅସ୍ପଷ୍ଟ କଣ୍ଠରେ କହିଲ, "ଓଃ, କେତେ ଜୋର୍‌ରେ ବର୍ଷା ହେଉଛି—ଝଡ଼ତୋଫାନ୍ ହେବ କି ?"

ସୁରେଶ ଅନୁରୂପ ଭାବରେ କହିଲା, "ଯେପରି ପବନ ବହୁଛି, ଝଡ଼ତୋଫାନ ହେବା କିଛି ଅସମ୍ଭବ ନୁହେଁ।"

"ବର୍ଷା ପଡ଼ିବା ଶବ୍ଦଟା କେଡ଼େ ସୁନ୍ଦର ଶୁଣାଯାଏ ସାର୍, ମତେ ଶୁଣିବାକୁ ଭାରି ଭଲଲାଗେ।" ଅରୁଣର ଶିଶୁସୁଲଭ କଥାବାର୍ତ୍ତାରେ ସୁରେଶ ଯେପରି ସହଜ ଅବସ୍ଥାକୁ ଫେରି ଆସିଲା। ଅରୁଣର କଥାରେ ସେ ପୂର୍ଣ୍ଣ ସମର୍ଥନ ଜଣାଇଲା।

"ସାର୍—ମତେ ବର୍ଷାରେ ଓଦା ହେବାକୁ ଭାରି ଭଲଲାଗେ—"

"ମତେ ବି ପିଲାଦିନେ ଭଲ ଲାଗୁଥିଲା ଅରୁଣ, ତେବେ ଆଜି-କାଲି ଆଉ ନୁହେଁ।"

ନିରର୍ଥକ କେତେଟା ପ୍ରଶ୍ନ-ଉତ୍ତର ଭିତର ଦେଇ ସେମାନେ ପରସ୍ପର ନିକଟରେ ନିଜ ନିଜର ମନୋଭାବ ଲୁଚାଇବାରେ ବ୍ୟସ୍ତ। କଥାବାର୍ତ୍ତା ମଝିରେ ସୁରେଶ ପ୍ରଶ୍ନକଲା, "ଅରୁଣ, ଏଇ ଛବିଟି କାହାର ?" ସେ ଅଙ୍ଗୁଳି ଦ୍ୱାରା ନିର୍ଦ୍ଦେଶ କଲା—ଯୁବକଙ୍କର ଛବି ଆଡ଼କୁ।

ଅରୁଣ ମୁଣ୍ଡ ହଲାଇ ଉତ୍ତର ଦେଲା, ବାପା କହୁଥିଲେ, ତାଙ୍କ ବଡ଼ଭାଇଙ୍କର ଛବି ବୋଲି।" "ଓ—ତାହେଲେ ତମେ ତାଙ୍କ ପରି ଅନେକଟା ଦେଖିବାକୁ ପାଇଛ—ଦେଖିଲ, ତୁମ ସଙ୍ଗେ ତାଙ୍କ ଛବିର କିପରି ସାଦୃଶ୍ୟ ଅଛି ? ଅଚ୍ଛା, ଅରୁଣ, ସେ ଏବେ କେଉଁଠି ଅଛନ୍ତି—"

Digitized by srujanika@gmail.com

"ସେ ଅନେକଦିନ ହେଲା ମରିଗଲେଣି—"

"ଓଃ—" ପ୍ରସଙ୍ଗଟାର ସମାପ୍ତି ତ ଏଇଠାରେ ହୋଇଗଲା । ଅଉ କି ପ୍ରଶ୍ନ କରି ଯାଇପାରେ ? ସୁରେଶ ଇତସ୍ତତଃ କରିବାକୁ ଲାଗିଲା ।

ଏହିସମୟରେ ତାର ଦୃଷ୍ଟି ପଡ଼ିଲା, ଘରର ଗୋଟିଏ କୋଣରେ ଥିବା ସୁଦୃଶ୍ୟ ଅର୍ଗାନ୍‌ଟି ଉପରେ । ସେ ପଚାରିଲା, "ଆରତି, ଅର୍ଗାନ୍‌ଟି କିଏ ବଜାନ୍ତି ? ବାପା ?"

ଆରତି ମୁହଁ ତଳକୁ କରି, ଧୀରେ ଧୀରେ କହିଲା, ନା, "ସାର୍, ମୁଁ ବଜାଏ—"

ସୁରେଶ ବିସ୍ମିତ ହୋଇ କହିଲା, "ଏଁ—ତୁମେ ତାହେଲେ ବଜାଇ ଜାଣ ଛସ୍ । ସଙ୍ଗୀତ ବିଦ୍ୟାରେ ତ ତୁମେ ପାରଙ୍ଗମ ହୋଇ-ସାରିଛ—କିନ୍ତୁ ଆରତି, ଏତେଦିନ ହେଲା ତ ମତେ କହିନାହଁ ?" ଆରତି ହାସ୍ୟମିଶ୍ରିତ କଣ୍ଠରେ କହିଲା, "ଆପଣ କଣ ସାର୍, ମତେ କେବେ ସଙ୍ଗୀତ ବିଷୟ ପଚାରିଛନ୍ତି ?"

ସୁରେଶ ଲଜ୍ଜିତ କଣ୍ଠରେ କହିଲା, "ଅଚ୍ଛା—ହେଲା, ମୋର ଦୋଷ ହୋଇଛି । ଏଥର, ଆରତି, ତୁମ ସାର୍‌ଙ୍କୁ ଗୋଟେ ଦୁଇଟା ଗୀତ ଶୁଣାଇ ଦିଅ ।"

"ନା, ସାର୍, ମତେ ଭଲ କିଛି ଆସେନା ।"—ମୁଁ ଗାଇ ପାରିବିନା ।" ଅନ୍ୟସମସ୍ତଙ୍କ ପରି ଆରତି ପ୍ରଥମେ ଆପତ୍ତି କଲା ।

ସୁରେଶ ହସି ହସି କହିଲା—"ହଉ, ଭଲ ନ ହେଉ ପଛକେ ମୁଁ କିନ୍ତୁ ଶୁଣିବି ।"

Digitized by srujanika@gmail.com

ସୁରେଶର ଏକାନ୍ତ ଅନୁରୋଧରେ ଅତି ଯାଇ ଅର୍ଗାନ୍ ନିକଟରେ ବସିଲା ।

ତାପରେ ଶୁଭିଲା ଆରତିର ବୀଣାନିନ୍ଦୀ କଣ୍ଠସ୍ୱର-ଲହରୀରେ ସ୍ପନ୍ଦନ ।

ବାସ୍ତବିକ, ସଙ୍ଗୀତ ବିଷୟରେ ଆରତିର ନାମ ଡାକ ଥିଲା, ପ୍ରତିଦିନ ସନ୍ଧ୍ୟାବେଳକୁ ରାମବାବୁ ନିଜର ପାଂଚ”ଛ’ଜଣ ବନ୍ଧୁଙ୍କ ସାଙ୍ଗରେ ବସି ଆରତିରୁ ସଙ୍ଗୀତ ଶୁଣନ୍ତି । ଆରତିର କଣ୍ଠମାଧୁରୀକୁ ବନ୍ଧୁଗଣ ପ୍ରଶଂସା ନ କରି ରହିପାରନ୍ତି ନାହିଁ । ସଙ୍ଗୀତାନୁରାଗୀ ରାମବାବୁ ଅତ୍ୟନ୍ତ ଭିତୋର ହୋଇଯାଆନ୍ତି କନ୍ୟାର ସଙ୍ଗୀତ ଶୁଣି । ତାଙ୍କର ଏତେ ଦିନର ଆଶା ସଫଳ ହୋଇଛି ; ଆରତି ସଙ୍ଗୀତ-ବିଦ୍ୟାରେ ଉପଯୁକ୍ତ ଶିକ୍ଷା ଲାଭ କରିଅଛି ।

ବାହାରେ ବର୍ଷାର ସଙ୍ଗୀତ ସଙ୍ଗେ ଆରତିର ସଙ୍ଗୀତ ମିଶି ଏକ ଅପୂର୍ବ ଭାବର ସୃଷ୍ଟି କରିଦେଲା । ଯୁବତୀରେ ସୁରେଶ ଯେ କେତେବେଳେ ଆସି ଆରତିର ନିକଟରେ ଠିଆ ହୋଇଛି, ତା ଜାଣିନି ଆରତି । ନିଜର ତାଳ, ଲୟ, ମୂର୍ଚ୍ଛନାରେ ସେ ଏକାବେଳେ ବିଭୋର ହୋଇଯାଉଛି । ତାର ସୁନ୍ଦର ମୁହଁରେ ଭାବ କ୍ଷଣକୁ କ୍ଷଣ ପରିବର୍ତ୍ତିତ ହୋଇଯାଉଛି—ଅର୍ଦ୍ଧନିମୀଳିତ ଚକ୍ଷୁ ଦୁଇଟିର ସ୍ୱପ୍ନମୟୀ ଦୃଷ୍ଟି !

ସୁରେଶ ଚାହିଁ ରହିଛି ଉନ୍ମୁଖ ଭାବରେ—ସଙ୍ଗୀତର ଅପୂର୍ବ ମୂର୍ଚ୍ଛନାରେ ମୁଗ୍ଧ ହୋଇ ନା, ଆରତିର ଅନିନ୍ଦ୍ୟସୁନ୍ଦର ମୂର୍ତ୍ତିରେ ଆକୃଷ୍ଟ ହୋଇ ? କେଜାଣି—?

ସଙ୍ଗୀତର ସୁର ବୋଧହୁଏ ତା କାନରେ ପଶୁନାହିଁ । କଳ୍ପନାରେ ବୁଡ଼ିଯାଉଛି ସେ !... ...ଆରତିକୁ କଣ୍ଠରୁ ସହଧର୍ମିଣୀ

Digitized by srujanika@gmail.com

ହୃଦୟରେ ବରଣ କରିଛି; କିନ୍ତୁ ଆରତିର ମତ ? ତାକୁ ସେ ସ୍ପଷ୍ଟ ଭାବେ ପଚାରିବ ! ଠିକ୍ ସେହି ସୁଯୋଗଟି ଆସିଛି ଆଜି···କିନ୍ତୁ···ପ୍ରତିଦାନରେ ସେ କଣ ପାଇବ ? ସାଦର ବରଣ ?···ଆରତି ତାକୁ ପ୍ରତ୍ୟାଖ୍ୟାନ କରିବ ନାହିଁ ତ ? ତାହେଲେ ତା ଜୀବନର ଶ୍ରେଷ୍ଠ ଅଂଶ କଳ୍ପନାରେ ଭସ୍ମ ହୋଇଯିବ ଯେ—ନା, ନା ହୁଏତ ଆରତି ମଧ୍ୟ ତାକୁ ଭଲପାଏ···ଆଶା-ନିରାଶାର ଦୋଳିରେ ତାର ମନଟା ଝୁଲିବାକୁ ଲାଗିଲା ।

ଏ ପର୍ଯ୍ୟନ୍ତ ଆରତିକୁ ସ୍ପଷ୍ଟଭାବରେ ବୁଝିପାରିନି ସେ···କିନ୍ତୁ କଥାଟା କିପରି କହିବ ଆରତିକୁ ?"

ଆରତିର ମୁହଁ ଉପରେ ତାର ଦୃଷ୍ଟି ପଡ଼ିଲା । ସଙ୍ଗୀତ ଶେଷ ହେବା ପରେ ସୁରେଶକୁ ଏତେ ନିକଟରେ ଠିଆ ହୋଇଥିବା ଦେଖି ଆରତି ସ୍ତମ୍ଭିତ ହୋଇଗଲା ।!

ଆରତିର ପଦ୍ମ ପଲାଶସମ ନେତ୍ର ଦୁଇଟି ଉପରେ ନିଜର ସ୍ନିଗ୍ଧ ଦୃଷ୍ଟି ସ୍ଥିରଭାବେ ରଖି ସୁରେଶ କହିଲା ଆରତି ··· ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେବ ?"

ଆରତି ବିମୂଢ଼ ଦୃଷ୍ଟିରେ ଚାହିଁ ରହିଲା । ବାହାରେ ମେଘ, ବର୍ଷା, ବିଜୁଳି; ଘଡ଼ ଘଡ଼ି ସବୁ ଏକାକାର ହୋଇ ଯାଉଛି ଯେପରି—

"ଆରତି ! ଏତେଦିନ ହେଲା କଥାଟା କହିବି କହିବି ବୋଲି କହି ପାରୁନି·····ଆଜି ଆଉ ନ କହି ରହି ପାରୁନି ·····ଆରତି ତୁମେ କିଛି ଭାବିବନି ତ ?"

ଅଭିଭୂତ ପରି ଆରତି ଶୁଣି ଯାଉଥିଲା । "କଥାଟା କଣ !" ମୃଦୁ ସ୍ୱରରେ ଜିଜ୍ଞାସୁ ଦୃଷ୍ଟିରେ ସେ ଚାହିଁଲା ସୁରେଶ ଆଡ଼କୁ—

Digitized by srujanika@gmail.com

“କଥା ଠା—” ସୁରେଶ ଟିକେ ରହି ଯାଇ କଣ୍ଠରୁ ଜଡ଼ିମା ଟା-
ଦୂର କରିବାକୁ ଚେଷ୍ଟା କଲା । ପରେ କହିଲା, “ଅଚ୍ଛା, ଆରତି— ମୁଁ
ଯଦି·····ତୁମକୁ ବିବାହ କରିବାକୁ ଚାହେଁ ?”

ବିଦ୍ୟୁତସ୍ପୃଷ୍ଟ ପରି ଆରତିର ଅନ୍ତର ଚମକି ପଡ଼ିଲା । ଅନେକ ଆଗରୁ ଏ ଧରଣର ଗୋଟିଏ କଥା ଶୁଣିବାକୁ ପ୍ରତ୍ୟାଶା କରୁଥିଲେ ସୁଦ୍ଧା ସେ ଯେପରି ଅପ୍ରତ୍ୟାଶିତ ଭାବରେ କଥାଟା ଶୁଣିଲା । ଅକସ୍ମାତ୍ ରକ୍ତର ଢେଉ ଯେପରି ଖେଳିଗଲା ତା ମୁହଁରେ । ପାଟଳ ଓଠ ଦୁଇଟି ଅଜଣା ଆବେଗରେ ଥରିଗଲା । ଅଭିଭୂତ ଦୃଷ୍ଟି ଲଇଁପଡ଼ି ଭୂପୃଷ୍ଠରେ ନିବଦ୍ଧ ହୋଇଗଲା । ସେ ଆଜ ସୁରେଶର ଶିଷ୍ୟା ଆରତି ନୁହେଁ—ସୁରେଶର ପ୍ରେମିକା ! କର୍ଣ୍ଣମୂଳ ଉତପ୍ତ ହୋଇଉଠିଲା ତାର ।

ସୁରେଶ ସେତେବେଳକୁ କହୁଛି, “ତୁମର ସେଥିରେ ମତ ଅଛି ତ, ଆରତି ? ଆଜି କାଲିକା ଯୁଗରେ ତୁମର ମତଟା ସର୍ବ ପ୍ରଥମେ ବୁଝିନେବା ଟା ବାଞ୍ଛନୀୟ ମନେକଲି····· ଏଥିରେ କଣ ଦୋଷ ହୋଇଛି······ ଦୋଷ ହୋଇଥିଲେ କ୍ଷମା କରିବ······”

କଥାଟା ଯେପରି ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣରୂପେ ବୁଝିପାରିନି ଆରତି । କିନ୍ତୁ ଅନ୍ତରଟା ଉଚ୍ଛ୍ୱସିତ ହୋଇଉଠୁଛି କି ଏକ ଉଦ୍ଦାମ ଆବେଗରେ । ସୁରେଶର ବ୍ୟାକୁଳ ଜିଜ୍ଞାସୁ ଦୃଷ୍ଟିତଳେ ଥାଇ ପ୍ରଶ୍ନର କଣ ଉତ୍ତର ଦେବ ଭାବି ପାରିଲିନାହିଁ ସେ । ଏ ସମୟରେ ସୁରେଶର ହାତଟା ଆସି ଆରତିର କାନ୍ଧ ଉପରେ ପଡ଼ିଲା । ସୁରେଶ ତାକୁ ସ୍ପର୍ଶ କରୁଛି ପ୍ରେମିକର ପ୍ରେମ ମଧୁର ସ୍ପର୍ଶ ! ଆରତିର ସର୍ବାଙ୍ଗରେ ଏକ ଅପୂର୍ବ ଶିହରଣ ଖେଳିଗଲା । ଜାମା ଉପରେ ହାତଟା ଥିଲେ ମଧ୍ୟ ଯେପରି ଅନୁଭୂ-

Digitized by srujanika@gmail.com

ସ୍ପଷ୍ଟଭାବେ ଅନୁଭବ କରିପାରିଲା-ସେହି ଦୃଢ଼ ହାତଟିର ଉତ୍ତପ୍ତ ସ୍ପର୍ଶ— କାନ୍ଧର ସେ ସ୍ଥାନଟା ଯେପରି ଉତ୍ତପ୍ତ ହୋଇଯାଇଛି ସେହି ତପ୍ତ ସ୍ପର୍ଶରେ ସୁରେଶକୁ କାନ୍ଧ ଉପରୁ ହାତଟା ଉଠାଇ ନେବାକୁ କହିବାକୁ ଯାଇ କଥାଟା ତାର ଜିଭ ଅଗରୁ ଲେଉଟିଗଲା ।

ସୁରେଶ ପୁଣି ଧୀରେ ଧୀରେ କଥା ଆରମ୍ଭ କଲା । ତା ସ୍ୱରଟା ମଧ୍ୟ ସ୍ପଷ୍ଟଭାବେ ଥରୁଛି ।

'ଅରତି, ତୁମେ ଶୀଘ୍ର କହ ତୁମ ମତଟା କଣ ? ତୁମେ ଜାଣ, ମୁଁ ସତ୍ପାତ୍ରଙ୍କ ମଧ୍ୟରେ ଗଣା ହୋଇପାରିବି···ତୁମର ବାପା କି ମା' ଙ୍କର କିଛି ଆପତ୍ତି ରହିବ ନାହିଁ । କିନ୍ତୁ···ତୁମେ କହ, ଅରତି, ତୁମର ମତ କଣ ?"

ସୁରେଶ ସାଗ୍ରହରେ, ସସ୍ନେହ ଦୃଷ୍ଟିରେ ଅରତିର ନମିତ ମସ୍ତକ ଆଡ଼କୁ ଚାହିଁଲା । ତାପରେ ଆଉଥରେ କହିଲା—"ଏଥିରେ ଲଜ୍ଜା କରିବାର କୌଣସି କାରଣ ନାହିଁ—ଯାହାଙ୍କୁ ଆଜୀବନ ସଙ୍ଗୀ କରିବ— ବା ଯାହାର ଆଜୀବନ ସଙ୍ଗିନୀ ହେବ, ତାକୁ ବାସ୍ତବିକ୍ ତୁମେ ଚାହଁ କି ନାହିଁ, ଏକଥା ଅନ୍ତରକୁ ପଚାରି ବୁଝିବା ଚାଷ୍ଟୁମାୟୁ ନୁହେଁ କି ?······ ଅରତି, ନବଯୁଗର ସ୍ୱାଧୀନ ଝିଅ ତୁମେ—ତୁମ ପକ୍ଷରେ ଲଜ୍ଜା କରିବାଟା ସୁନ୍ଦର ଦିଶେ ନା, କହ···ଅରତି, ତୁମର ସ୍ପଷ୍ଟ ଉତ୍ତରରେ ମୋର ସନ୍ଦେହ ଭାଙ୍ଗିଯିବ···"

ଅରତି ନିଜେ ପ୍ରଶ୍ନଟି ସହିତ କେତେ ତର୍କ କରିଛି; ବିବାହ ପୂର୍ବରୁ ବର-କନ୍ୟା ଦୁହିଁଙ୍କର ପରସ୍ପର ମତ ଥିବା ଆବଶ୍ୟକ । ପ୍ରଶ୍ନଟି ଚିନ୍ତିବାବେଳେ ଭାବେ, "ଆମରି ଦୋହାଏ ମତ କଣ ନ ? ବାପା ମା-

Digitized by srujanika@gmail.com

ଙ୍କର ମତ ଥିଲେ ଗଲା, ଏଇଟା ସମ୍ଭବତଃ ମନେକରିନେଲୁ ନିଶ୍ଚୟ ଯେ, ବାପା ମା ଯେବେ ହେଲେ ଝିଅକୁ ଅଯୋଗ୍ୟ ପାତ୍ର ହାତରେ ଦେଇପାରିବେନ—"ସେତେବେଳେ ଅରୁନ୍ଧ ଝଙ୍କାର ଦେଇ ଉଠିଛି, "କଣ ନାଗ ଏତେ ଭୁକ୍ତ, ଇତ୍ୟାଦି ଇତ୍ୟାଦି ।" ଆଜି ତ ସେହି ସମୟ ଅସିଛି, କିନ୍ତୁ କାହାଁକି ସେ ଉତ୍ତର ଦେଇ ପାରୁନି ? ତାର ମନେ ହେଉଥିଲା, କହିଦିଅନ୍ତା, "ମୋର ଗୋଟାଏ ମତ କଣ ଏ ? ଖୁଡ଼ୀମା, ଆଉ ବାପାଙ୍କୁ ପଚାରନ୍ତୁ ।"କିନ୍ତୁ ଯୁ। କହୁଲେ ମଧ୍ୟ ସୁରେଶଠାରୁ ନିଷ୍କୃତି ପାଇବାର ଆଶା ନାହିଁ । ସୁରେଶ ତା ମୁହଁରୁ ଉତ୍ତରଟା ଶୁଣିବାକୁ ଚାହେଁ । ସୁରେଶ କି ଜିଦ୍‌ଖୋର—ସେ କଣ ଆଖିର ଭାବଭଙ୍ଗୀ ଦେଖି ଉତ୍ତରଟା ପାଇପାରୁନି ?

ସୁରେଶର ବାରମ୍ବାର ପ୍ରଶ୍ନରେ ବିବ୍ରତ ହୋଇଛି ସେ । ଅରୁନ୍ଧ ଶେଷକୁ ଜଡ଼ିତ କଣ୍ଠରେ କହିବାକୁ ବାଧ୍ୟ ହେଲା, "ମୋ—ମତରେ କି ଦରକାର···ଅଛି···ବାପା ଆଉ ଖୁଡ଼ୀମା··'

କଥାଟା ସେ ଆଉ ଶେଷ କରିପାରିଲା ନାହିଁ—ଲଜ୍ଜାରେ କଣ୍ଠ ତା'ର ରୁଦ୍ଧ ହୋଇଗଲା । ତା କଣ୍ଠସ୍ୱର ସେହି ବର୍ଷାମୁଖର ଶୀତଳ ସନ୍ଧ୍ୟାରେ ଥାଇ ମଧ୍ୟ ତାର ଗୋରା କପାଳରୁ ବିନ୍ଦୁ ବିନ୍ଦୁ ଝାଳ ଝରିପଡ଼ିଲା । ଅରୁନ୍ଧର ମନୋଭାବ ବୁଝିବାକୁ ସୁରେଶର ବାକି ରହିଲାନି । ତେବେବି ସେ ଦୁଷ୍ଟାମି କରି ଅବୁଝା ପରି କହିଲା—"ସତେ; ଆଉ—ତୁମର ତା' ହେଲେ ମତ ନାହିଁ—ତାହେଲେ ମୁଁ ବୃଥା ଆଶା କରିଥିଲି ?" କୃତ୍ରିମ ନିରାଶାରେ ତା କଣ୍ଠସ୍ୱର ଭରି ଯାଉଥିଲା । ସେ ଅରୁନ୍ଧ ମୁହଁ ଉପରକୁ ଠିକ ଚାହିଁଲା—ସୁରେଶର ଚକ୍ଷୁର ଦୃଷ୍ଟି କୌତୁକରେ ଟଳ୍ ଟଳ୍ କରୁଛି । ମୁହଁରେ ପରମତୃପ୍ତିର ହସ । ଅରୁନ୍ଧ ଅପ୍ରସ୍ତୁତ ହୋଇ ଅଭିମାନରେ ମୁହଁ ତଳକୁ କରିଦେଲା—ସୁରେଶର ଦୁଷ୍ଟାମି ବୁଝିପାରିଛି ସେ !

Digitized by srujanika@gmail.com

ସୁରେଶ ଅବେଗ ଭରେ ତା'ର କୋମଳ କରପଲ୍ଲବଟିକୁ ନିଜ ହସ୍ତରେ ଧରି କହିଲା, "ତୁମେ କଣ ଭାବୁଛ—ଆରତି, ତୁମ ବାପା, ମାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟ କରିପାରିବି ? ସେମାନଙ୍କ ହେତୁ ତ ମୁଁ ଆଜି ତୁମକୁ ପାଇଛି—" ସୁରେଶ ଆଜି କଣ କହିବାକୁ ଯାଉଥିଲା କିନ୍ତୁ ଠିକ୍ ଏହି ସମୟରେ, ଅପ୍ରତ୍ୟାଶିତ ଭାବରେ ଉଭୟଙ୍କୁ ଚମକିତ କରି ଉମାଙ୍କର ଗମ୍ଭୀର ସ୍ୱର ଶୁଣାଗଲା—"ଆରତି..."

ଆରତି ନିଜର ହସ୍ତ ମୁକ୍ତ କରି ତ୍ରସ୍ତାହରିଣୀ ପରି ଦ୍ରୁତଗତିରେ ଘରୁ ବାହାରିଗଲା। ବାରଣ୍ଡାକୁ ଆସି ସମ୍ମୁଖରେ ଉମାଙ୍କୁ ଦେଖି ସେ ସ୍ତମ୍ଭିତ ହୋଇଗଲା। କିଛିକ୍ଷଣପରେ ଯଥାସାଧ୍ୟ ଚେଷ୍ଟାକରି କହିଲା— "କଣ...ଖୁଡ଼ୀ–ମା ?"

ଉମା କିଛିସମୟ ପର୍ଯ୍ୟନ୍ତ କୌଣସି ଉତ୍ତର ଦେଲେ ନାହିଁ। ଅସ୍ୱାଭାବିକ ଭାବରେ ଗମ୍ଭୀର ହୋଇଯାଇଥିଲା ତାଙ୍କ ମୁହଁଟା। କଣ ଭାବି ତାପରେ ସେ କହିଲେ, "ତୋ–ସାର୍‌ଙ୍କୁ ଜଳଖିଆ ନେଇ ଦେଇ ଦେ—"

ଆରତି ଖୁଡ଼ୀମାଙ୍କର ଗମ୍ଭୀର ମୁହଁ ଦେଖି ଡରି ଯାଇଥିଲା। ଉମା ଯେ ସେମାନଙ୍କର ପ୍ରତ୍ୟେକ କଥା ଶୁଣି[illegible], ସେ ବିଷୟରେ ଆଉ ସନ୍ଦେହ ରହିଲାନି ତାର। ସୁରେଶ ସମ୍ମୁଖରେ [illegible] ମିଳା-ଯାଇଁ ଲଜ୍ଜାବୋଧ ହେଲେହେଁ ସେ ବାଧ୍ୟ [illegible]। [illegible] ଉପରେ ପାନଟି ରଖି ନତମୁଖରେ ସେ କହିଲା—"[illegible] ...ସା ...... ର୍"

ସୁରେଶ ଯଥାସମ୍ଭବ ଦ୍ରୁତବେଗରେ ମୁହଁ-କପଡ଼ା ଖାରିଦେଲା। ବର୍ଷାଟା ଅନେକ କମିଗଲାଣି। ସେଠାରେ ଆଉ ଅଧିକ କ୍ଷଣ ଅଳସ୍ମ

Digitized by srujanika@gmail.com

କରିବା ବାଞ୍ଛାଯାଏ ତୁମେ ମନେକରି, ସୁରେଶ କହିଲା, "ଆରତି··· ଆଚ୍ଛା, ମୁଁ ଯାଉଛି ତାହେଲେ···"ଶୁଭ ସନ୍ଧ୍ୟା"

ବାରଣ୍ଡା ଉପରେ ଠିଆହୋଇ ଆରତି ଅସ୍ପଷ୍ଟ କଣ୍ଠରେ ଉତ୍ତର ଦେଲା—"ଶୁଭ--ସନ୍ଧ୍ୟା।"

ସୁରେଶକୁ ବିଦାୟ ଦେବାକୁ ମନ ତାର ପୀଡ଼ିତ ହୋଇଉଠିଲା। ସଜଳ ହୋଇଗଲା ଚକ୍ଷୁ ଦୁଇଟି। ଆରତିର ବିଷାଦ-ଭରା ମୁହଁଟିକୁ ଚାହିଁ ସୁରେଶ ଦୀର୍ଘନିଃଶ୍ୱାସ ତ୍ୟାଗ କଲା।

× × × ×

ମା'ଙ୍କ ସନ୍ଧାନରେ ଆରତି ଶୋଇବା ଘର ଭିତରକୁ ଯାଇ ଦେଖିଲା, ଖୁଡ଼ୀମା ଚୁପ ହୋଇ ବସିଛନ୍ତି। ଧୀରେ ଧୀରେ ପାଖକୁ ଯାଇ ଡାକିଲା, "ଖୁଡ଼ୀ—ମା।"

ଉମା ଚମକି ଫେରି ଚାହିଁଲେ। ତାପରେ ଉଦାସ କଣ୍ଠରେ କହିଲେ—"ଆରତି ଆସେ, ବସିକରି କଣ ଦି'ଖଣ୍ଡ ଖାଇ ଦେ ତ—"

ଉମାଙ୍କର ଶାନ୍ତ ମୁଖରେ ନୀରସ କଣ୍ଠସ୍ୱର ଶୁଣି ଆରତି ଆଉ-କିଛି କହି ପାରିଲାନି। କୌଣସି ମତେ ଜଳଖିଆ ଖାଇଦେଇ ସେ ଚାଲିଆସିଲା। ତାର ନଜର ନିଭୃତ ପଢ଼ାଘରଟିକୁ—

ଅପରାଧୀ ଯେପରି ବିଚାରକ ସମ୍ମୁଖରେ ଥାଏ, ଠିକ୍ ସେହିପରି ଆରତି ସେହିପରି ଆରତି ଖୁଡ଼ୀ ମାଙ୍କ ସମ୍ମୁଖରେ ବସିଥିଲା ଏତେ-କ୍ଷଣଯାଏ। ପଢ଼ାଘରକୁ ଆସି ଆଜିକାର ଘଟଣା ଗୁଡ଼ିକ ଭାବିବାକୁ

Digitized by srujanika@gmail.com

ଲାଗିଲା । କଣ ହେଉ ହେଉ କଣ ହୋଇଗଲା ଯେ । ଉପନ୍ୟାସରେ ଏହିପରି ଅନେକ ଘଟଣା ପଢ଼ିଛି କିନ୍ତୁ ତା ନିଜ ଜୀବନରେ ଏହିପରି ଗୋଟିଏ ରୋମାଞ୍ଚକର ଅନୁଭୂତ ଦେଖାଦେବ ! ତା' ସ୍ୱପ୍ନରେ ସୁଦ୍ଧା ସେ କେଉଁଦିନ ଭାବି ନଥିଲା ।

“ଏତେଶୀଘ୍ର ଉତ୍ତରଟା ଦେଇଦେବା ଭଲ ହୋଇଛି, ବୋଧହୁଏ ...” ସୁରେଶ ଉପରେ ରାଗ ହେଲା ତାର, ସୁରେଶ କଣ ଜାଣିନାହିଁ ଯେ ସେହିପରି ଅବସ୍ଥାରେ ଠିକ୍ ଉତ୍ତର ଦେବା କେତେ କଷ୍ଟକର... ସବୁ ବୁଝିସୁଝି ସୁରେଶ କେତେ ଫାଜିଲାମି କରୁଥିଲା...ଆଚ୍ଛା, ସେ ଠିକ୍ ଉତ୍ତର ଦେଇଛି ନା ଭୁଲ୍ କହିଛି ?...ପ୍ରକୃତରେ ସେ କଣ ସୁରେଶକୁ ଭଲପାଏ ନାହିଁ ? କେତେଥର ସେ ସୁରେଶ ସହିତ ତାର ବିବାହ କଳ୍ପନା କରିନାହିଁ !...ଭଗବାନ୍ ବୋଧହୁଏ ତା ଅନ୍ତରର ଗୋପନ କଥା ଜାଣିପାରି ଏହିପରି ଘଟାଇ ଦେଲେ...କି ଅପ୍ରତ୍ୟାଶିତ ଭାବରେ ଗୋଟିଏ ସୁମଧୁର ଚିରସ୍ମରଣୀୟ ଘଟନା ତା ଜୀବନରେ ଘଟିଗଲା...”

ଏଇସମୟରେ ତାର ମନେ ପଡ଼ିଲା ପ୍ରଣତି ନିକଟକୁ ଗଲେ ଯାଇ ସେ ଶାନ୍ତି ପାଇବ !

ଆରତି ଧୀରେ ଧୀରେ ଆଉଥରେ ମା'ଙ୍କ ନିକଟକୁ ଆସି କହିଲା, “ଖୁଡ଼ୀମା, ପ୍ରଣତିର ଦେହଟା ଭଲ ନ ଥିଲା—ମୁଁ ଦେଖି ଆସିବ ?”

ଉମା ମୀଂସ କଣ୍ଠରେ କହିଲେ, “ହଉ—ଯା !”



Digitized by srujanika@gmail.com

## — ହାତ —

ଆଜି ଦେହ ଅସୁସ୍ଥ ବୋଲି ପ୍ରଶାନ୍ତ ଯାଇନାହିଁ କଲେଜକୁ । ସତରେ କଣ ଦେହ ଅସୁସ୍ଥ ! 'ଆହା ! ଆରତି ଯେ ଏକା ଯାଉଥିବ— ସେ କଲେଜକୁ ଯାଉଥିଲେ ବୋଧହୁଏ ଭଲ ହୋଇଥାନ୍ତା ...'' ଏକାନ୍ତ ବେଦନାରେ ସାରାଦିନଯାକ ଛନଛନ ହୋଇ ପ୍ରଶାନ୍ତ ଘରଯାକ ବୁଲିବାକୁ ଲାଗିଲା । ଏ ସମୟରେ ଆସିଲା ବର୍ଷା—ଆଃ ! କି ସୁନ୍ଦର ! ବର୍ଷାର ଶୀତଳ ସ୍ପର୍ଶ ପାଇବା ପାଇଁ ପ୍ରଶାନ୍ତ ପଢ଼ାଘର ଝରକା ନିକଟରେ ଠିଆ ହେଲା । ପାଣିର ଛିଟିକା ଆସି ତା ଦେହରେ ପଡ଼ିବାକୁ ଲାଗିଲା । ଏ ଘରଟାର ଝରକା ପାଖରେ ଠିଆ ହେଲେ ରାସ୍ତାଟା ଦିଶୁଛି । ବେଶ୍ ସୁନ୍ଦର ଭାବରେ ପାଣିଯାକ ଗଡ଼ିଯାଉଛି ଆଲକାତରା ଦିଆ ରାସ୍ତା ଉପରୁ—

ହଠାତ୍ ରାସ୍ତା ଆଡ଼କୁ ଚାହିଁ ତା'ର ରକ୍ତ ସବୁ ବରଫ ପାଲଟିଗଲା ଯେମିତି ! କି ଏକ ଅବ୍ୟକ୍ତ ଯନ୍ତ୍ରଣାରେ ବକ୍ଷ ଭିତରଟା ଭରିଗଲା । ସେ ଦେଖିଲା—ଗୋଟିଏ ଛତା ତଳେ ସୁରେଶ ଓ ଆରତି ଆସୁଛନ୍ତି ଦୂରରୁ । ସମୟ ସମୟରେ ଆରତିର ବାହୁ ସଙ୍ଗେ ସୁରେଶର ବାହୁଟି ଘଷି ହୋଇଯାଉଛି । ଆରତିର ମୁହଁ ହାସ୍ୟୋତ୍ଫୁଲ୍ଲ, କଳକଣ୍ଠରେ ସେ କଣ କହି କହି ଆସୁଛି ଆଉ ସୁରେଶର ମୁହଁ ମଧ୍ୟ ପ୍ରଫୁଲ୍ଲ । ନିର୍ନିମେଷ ନୟନରେ ସେ ଚାହିଁରହିଲା । ସେତେବେଳକୁ ତାର ବୁକୁଅଡ଼େ ଯେମିତି ଧୂଆଁବାଟା ଘୂରୁଛି । ଝରକାର ଲୁହାବାଡ଼କୁ ଯେ ହାତରେ ଧରି ଠିଆ ହୋଇଥିଲା—ଅଜ୍ଞାତ ଅସ୍ୱାଭାବିକ ଦୃଢ଼ଭାବରେ ସେ ମୁଠାଇ ଧରିଲା ସେଗୁଡ଼ାକୁ । ବିଜୁଳିର ଆଲୁଅ ତା'ର ମୁହଁଟିରେ ସ୍ପର୍ଶ ବୁଲାଇ ଦେଇଗଲା ।

Digitized by srujanika@gmail.com

ଘବନ ଯୋଗ୍ୟ କେଶପାଶ ରୁକ୍ଷ, ଅସଂଯତ ଭାବରେ ଏଣେତେଣେ ଝୁଲି ଝୁଲୁଛି । ବର୍ଷାପାଣିରେ ଲୁଗା ପ୍ରାୟ ଓଦା ହୋଇଗଲାଣି । ମୁହଁଟା ଶବ ପରି ବିବର୍ଣ୍ଣ ହୋଇଯାଇଛି । ଏ ସବୁ ପ୍ରତି ତାର ଆଦୌ ଲକ୍ଷ୍ୟ ନାହିଁ ସେ ମନ୍ତ୍ରମୁଗ୍ଧ ପରି ସମ୍ମୁଖସ୍ଥ ରାସ୍ତାକୁ ଚାହିଁ ରହିଲା ।

ତାର ସମ୍ମୁଖ ଦେଇ ଦୁଇଜଣଯାକ ହସି ହସି ଘର ଭିତରକୁ ପଶିଥିଲେ । କେତେ କ୍ଷଣ ପରେ ତାଙ୍କ ବନ୍ଦ୍ ରୁମ ପରି ସଙ୍ଗୀତର ଲହରୀ ଆସି ତା କାନରେ ପଡ଼ିଲା । ଅରତିର ଗୀତର ପ୍ରତ୍ୟେକଟି ଭାଷା ଛୁରୀ ପରି, ଚୋଟିଏ ଚୋଟିଏ ଗାର ପରି ତା ହୃଦୟରେ ଗଳି ଯାଉଥିଲା ।

ସେତେବେଳେ ସେ ଅବିଚଳିତ ଭାବରେ ଠିଆ ହୋଇ ରହିଲା । ଚକ୍ଷୁରେ ତାର ଉନ୍ମାଦମୟ ଦୃଷ୍ଟି ଫୁଟିଉଠିଲା ।

ସୁରେଶ କିଛିକ୍ଷଣପରେ ଆନନ୍ଦୋଜ୍ଜ୍ୱଳ ମୁହଁରେ ବାହାରି କଣ ଗୋଟାଏ ସ୍ୱର ଗୁଣୁଗୁଣୁ କରି ଗାଉ ଗାଉ—ପଛକୁ ଫେରି ଚାହିଁ ଚାହିଁ, ଚାଲିଗଲା । ଅରତି, ବୋଧହୁଏ, ବାରଣ୍ଡାରେ ଠିଆହୋଇଛି ସେଥିପାଇଁ, ସୁରେଶ ବୁଲି ବୁଲି ଚାହୁଁଛି । ବାରଣ୍ଡାଟା ଦିଶୁନାହିଁ ଏଠାରୁ । ଚକ୍ଷୁ ଦୁଇଟି ଯେପରି ଜଳି ଉଠିଲା ତାର—ଏହି ଜ୍ୱାଳାମୟୀ ଦୃଷ୍ଟିରେ ସେ, ସୁରେଶକୁ ଭସ୍ମୀଭୂତ କରିଦେବାକୁ ଚାହେଁ ! ଥରେହେଲେ ଉପରକୁ ଚାହିଁଲାନି ସୁରେଶ—ଝରକା ତଳ ରାସ୍ତା ଦେଇ ସେ ନିଜ ବାଟରେ ଚାଲିଗଲା ।

ପ୍ରଣତି ଫେରିଆସି ତାର କ୍ଷୁଦ୍ର ଶଯ୍ୟାଟି ଉପରେ ବ୍ୟାଧିଗ୍ରସ୍ତା ଭୁଜଙ୍ଗୀ ପରି ଲୋଟିପଡ଼ିଲା । ଓଃ ହୋ ଅରତିକୁ ସୁରେଶ ଏତେ ଭଲ-ପାଇଛି ? ସେ ଆଜି ସୁରେଶର କେହି ନୁହେଁ—ଅରତି ତାର ସବୁ...

Digitized by srujanika@gmail.com

ଆରତି । ତାର ପ୍ରାଣର ଅବହେଳା ଶେଷରେ ତାର ସୁଖ-ପଥରେ କଣ୍ଟକ୍, ହେଲା ? କିନ୍ତୁ···ସେ ଯେ ସୁରେଶକୁ ପ୍ରାଣଠାରୁ ଅଧିକ ଭଲପାଏ··· କିପରି ଦେଖିବ ଆରତି ଓ ସୁରେଶର ପ୍ରଣୟ ଲୀଳା ?

ହଠାତ୍ ଆରତିର କଣ୍ଠ-ସ୍ୱର ଶୁଣି ପ୍ରଣତି ଝଡ଼ବେଗରେ ଉଠି ହଡ଼ ସ୍ନାନ-ଘର ଭିତରକୁ ପଶିଯାଇ ଦୁଆର ବନ୍ଦ କରିଦେଲା । ଯେତେ-ବେଳେ ଆରତି ଆସି ଡାକିଲା, "ପ୍ରଣତି—ଚାଞ୍ଚଲ ଆସେ—ଏ ସନ୍ଧ୍ୟା-ବେଳେ କଣ କରୁଛୁ ମ ?"

ପ୍ରଣତି ଭାବିଲା, ସମ୍ମୁଖରେ ତାର ଅଗ୍ନିପରୀକ୍ଷା ଉପସ୍ଥିତ । ତାକୁ ଛଦ୍ମବେଶ ପକାଇବାକୁ ହେବ, ଛଳନା କରିବାକୁ ହେବ, ସୁରେଶ ସହିତ ଆରତିର ପ୍ରେମ କାହାଣୀ ଶୁଣିବାକୁ ହେବ । । । ମୁହଁ ଭଲରୂପେ ଧୋଇସାରି ଅତି ଦ୍ରୁତବେଗରେ ସେ ପ୍ରସାଧାନ ଶେଷକଲା । ତାପରେ, ଅପେକ୍ଷାକୃତ ଶାନ୍ତ ଭାବରେ ବାହାରକୁ ଆସିଲା ।

ଦୁଇସଖୀ ଯାଇ ବସିଲେ ଛାତ ଉପରେ । ବର୍ଷାଟା କିଛିକ୍ଷଣ, ପୂର୍ବେ ବନ୍ଦ ହୋଇଯାଇଛି । ମେଘ-ମୁକ୍ତ ନିର୍ମଳ ଆକାଶ ବକ୍ଷରେ ଦୁଇ ଚିନୋଟା ତାରା ଓଡ଼ଣା ଖୋଲି ଚାହିଁଛନ୍ତି, ସମସ୍ତ ପୃଥିବୀଟା ଭରି ଯାଇଛି ଯେମିତି ଏ ଅପୂର୍ବ ସ୍ନିଗ୍ଧ ସୌନ୍ଦର୍ଯ୍ୟରେ । ସେତେବେଳେ ମଧ୍ୟ ଗଛପତ୍ରରୁ ପାଣି ଟପ୍ ଟପ୍ ହୋଇ ଝରୁଛି । ସାଗୁଆ ଘାସଗୁଡ଼ିକ ପାଣିରେ ଅଧେ ବୁଡ଼ି ଯାଇଛନ୍ତି । ରାସ୍ତାର ବିଜୁଳିବତୀ ଗୁଡ଼ିକ ଜଳୁଛନ୍ତି । ବର୍ଷାର କରୁଣତା ଯେପରି ସେ ପର୍ଯ୍ୟନ୍ତ ସେ ଗୁଡ଼ିକୁ ଘେରି ରହିଛି ।

ସତରଞ୍ଜିଟା ପକାଇ ଦେଇ, ତା ଉପରେ ବସି ଆରତି ଆବେଗ ଭରେ କଲେଜର ଘଟଣାଟା କହିଗଲା । ପ୍ରଣତି ଖାଲି ଶୁଣିଯାଉଥାଏ

Digitized by srujanika@gmail.com

ନୀରବରେ । ଅଟେଦ୍ଧ କୌଣସି କଥା କେବେ ପ୍ରାଣ-ସମା ସଙ୍ଗିନୀ ନିକଟରେ ଗୋପନ କରିନାହିଁ । ଅଜି ତା ଜୀବନରେ ଗୋଟିଏ ବଡ଼ ଆନନ୍ଦର ଦିନ । ଆନନ୍ଦର ଚରମ-ସୀମାରେ ସେ ଯାଇ ପହଞ୍ଚିଛି ଅଜି । ଅନ୍ଧକାର ସେହି ଉପନ୍ୟାସ ଧରଣର ଘଟଣାଟା ବର୍ଣ୍ଣନା, ନ କରି ରହିପାରିଲା ନାହିଁ ସେ ।

ଲଜ୍ଜାନମ୍ର ମଧୁର କଣ୍ଠରେ ଗୋଟାକ ପରେ ଗୋଟିଏ କଥା କହିଯିବାକୁ ଲାଗିଲା । ଥଉ ପ୍ରଣତି ଗୋଟାକ ପରେ, ଗୋଟିଏ କୁସୁମ-ମାଳ ସହିବାକୁ ଲାଗିଲା ନୀରବରେ । ସୁରେଶ ଘଟିତ ସବୁ ଘଟଣା କହିସାରିଲା ପରେ ଅରତି କହିଲା—"ପ୍ରଣତି, କାହାକୁ ଏ କଥା କହିବୁନାହିଁତ ?" ଏତିକ କହିଲା ପରେ ଅରତି ସେହି ସତରଞ୍ଜି ଉପରେ ପ୍ରଣତି କୋଳରେ ମୁଣ୍ଡ ରଖି ଶୋଇପଡ଼ିଲା ।

ଜଳନ୍ତ ଅଶ୍ରୁ ପ୍ରାଣପଣ ଚେଷ୍ଟାଦ୍ୱାରା ରୋଧକରି ପ୍ରଣତି କହିଲା, "ନା, ଅରତି କାହାକୁ କାହିଁକି କହିବାକୁ ଯିବି ମୁଁ—ବରଂ କହିବୁ ଯଦି ମାଉସୀଙ୍କ ନିକଟରେ ଯାଇ ବାହାପ୍ରସ୍ତାବଟା ପକାଇବି..."

ଅରତି ଅନ୍ଧକାରରେ ପ୍ରଣତିର ରକ୍ତଶୂନ୍ୟ ବିବର୍ଣ୍ଣ ମୁହଁ ଦେଖି ପାରିଲା ନାହିଁ । ସେ ପୂର୍ବପରି ପରମତୃପ୍ତିରେ ଅଖିବୁଜି କହିଲା, "ପ୍ରଣତି, ତୋ ନିକଟରେ କହିବାକୁ କିଛି ଲଜ୍ଜା ନାହିଁ......ମୁଁ ତାଙ୍କୁ ଆଗରୁ ଭଲ ପାଉଥିଲି...କିନ୍ତୁ ସେ ଯେ ମତେ ଏତେ ଭଲପାଆନ୍ତି ତା' ଜାଣି ନ ଥିଲି ।"

ପ୍ରଣତି ସନ୍ତର୍ପଣରେ ଅତି କଷ୍ଟରେ ଗୋଟିଏ ନିଶ୍ୱାସ ତ୍ୟାଗ କଲା । କ୍ରନ୍ଦନ ରୋଧ କରାଇଥିବା ଯୋଗୁଁ କଣ୍ଠନାଳୀଟା ଅସହ୍ୟ ବ୍ୟଥାରେ ଫୁଲିଉଠିଛି ଯେପରି ।

Digitized by srujanika@gmail.com

"ଅଚ୍ଛା, ପ୍ରଶାନ୍ତ—ତୁ କିଏ ଥିଲେ ତୋର ଜଣ ମତ ପ୍ରକାଶ କରୁନାହିଁ—କହ ମୁଁ କ'ଣ କଥା କହୁଛି କି ନାହିଁ । ନା ମୋର କିଛି ଦୋଷ ହୋଇଛି ?" ଅରୁଣ ପଚାରିଲା ।

ପ୍ରଶାନ୍ତର କଳକଣ୍ଠ ଯେପରି ଶତଛିନ୍ନ ହୋଇଗଲା । "ଭଗବାନ୍ ! ଏକ ନିଷ୍ଠୁର ଖେଳ ପ୍ରଭୁ ?" ତାର ଅନ୍ତର ଆର୍ତ୍ତନାଦ କରି ଉଠିଲା ।··· 'ନା-ନା ସେ ସବୁ ସହିବ ।' ଧୀରେ ଧୀରେ ସ୍ପନ୍ଦନ କଣ୍ଠରେ ସେ କହିଲା, "ନା ଅରୁଣ ତୋର କିଛି ଭୁଲ ହୋଇନାହିଁ ; ତୁ ଠିକ୍ କରିଛୁ ! ହିଁ··· ସୁର··ଶ୍ରୀର ପାତ୍ର କିଏ, କୌଣସି ବିଷୟରେ ଅନୁପଯୁକ୍ତ ନୁହଁନ୍ତି ତୁ ତାଙ୍କୁ ବାହା ହୋଇ ସୁଖୀ ହୁଅ , ଏଇଟା ମୋର ଅନ୍ତରର ଇଚ୍ଛା !" ସେ ତୋଳି ଗଲା । କଥା ଗୁଡାକ ତା ଗଳାରେ ଅଟକି ଯାଉଛି !··· "ତୁମେ ଦୁଇଜଣ ଯାକ ଈଶ୍ୱରଙ୍କ ଦୟାରେ ନୀଡ଼ ବାନ୍ଧି ଦୁଇଟି ବିହଙ୍ଗ ପରି ସୁଖରେ ରହ···ତୋ ପରି କୋମଳ ହୃଦୟା ବାଳକାକୁ ଈଶ୍ୱର ଯେପରି ଆଘାତ କେବେ ନ ଦିଅନ୍ତି···" ନିର୍ଜୀବ କଣ୍ଠରେ ଅବୃତ୍ତି କଲାପରି କହିଗଲା ସେ । ନିଜେ ସ୍ପଷ୍ଟ ବୁଝିପାରିଲାନି କଣ ସେ କହିଯାଉଛି ।

"ପିଲାଦିନରୁ ଯେପରି ହସ-ଖୁସି ଭିତର ଦେଇ ବଢ଼ି ଆସିଛୁ——ତୋର ଜୀବନଟା ସେହିପରି କଳହ ସଂ ଭିତର ଦେଇ ଗୁଲିଯାଉ··· ଅରୁଣ ! ତୁ ସଂସାରରେ ଦୁଃଖ କଣ ଜାଣିପାରିବୁ ନାହିଁ, ଏହିପରି ଦୁଃଖହୀନ ଭାବରେ ପରସ୍ପର ପରସ୍ପରକୁ ଏକାନ୍ତ ସ୍ନେହ କରି ଦୁଇଜଣ ସୁଖରେ ରହ । ଅରୁଣ— ତୁ ସୁଖୀ ହୁଅ— ସୁଖରେ ରହ । "

ଆହୁରି ସେ କଣ କହିଥାନ୍ତା କିନ୍ତୁ ଅରୁଣ ତା ପାଟିରେ ହାତ ଦେଇ କଥା ବନ୍ଦ କରିଦେଲା । ପରମୂହୁର୍ତ୍ତରେ ସେ ଝଙ୍କାର ଦେଇ କହିଲା, "ଏଇତ ଆରମ୍ଭ କରିଦେଲୁ—ପ୍ରଶାନ୍ତ ତୁ ଚୁପ ହୁଅ ଏଥର ।

Digitized by srujanika@gmail.com

ତୋର ଏ କାଂକ୍ଷାୟୁ ନଭେଲ୍ ଭଙ୍ଗୀର କଥା ଶୁଣିଲେ ମୋର ହାତ ଜଳି ଯାଉଛି । ତୁ ସୁଖୀ ହୁଅ—ସୁଖରେ ରହ—ଭଗବାନ୍ କରନ୍ତୁ ଏ ସବୁ ବଡ ବଡ଼ କଥା କହିଲା ବେଳକୁ ତୋ ପାଇଁ କପଟ ଅର୍ଥାର୍ଜନ, ତା ଭାବି ମୁଁ ଆଶ୍ଚର୍ଯ୍ୟ ହେଉଛି ପ୍ରଣତି—ସତେ ଯେପରି ତୁ ମହାଦୁଃଖୀ-ନୀ ! ସେହିପରି କଥା ଗୁଡ଼ାକ କହୁଛୁ ତୋର ଆଉ କ୍ଷଣ ବାହାଘର ହେବ ନାହିଁ ପରା ? ବର ସଙ୍ଗେ କେତେ ଆନନ୍ଦରେ ଚାଲିଯିବୁ । ସେତେବେଳେ ଆଉ ଭାରି-ସୁଖୀ ଅଜିତ କ ମନେ ପଡ଼ିବକି ? ରହ, ମୁଁ ମଧ୍ୟ ଠିକ୍ ଏହିପରି କହିବ ମନେ ରଖିଥା । ତୁ ବସିଥିବୁ, ତୋର ସିଏ ବସିଥିବେ, ତାଙ୍କ ଆଗରେ ମୁଁ ତୋର ସାହିତ୍ୟଭାଷା ବଖାଣି କରି କହିବ, "ହେ ନୂତନ ଦମ୍ପତି—ମୋର ଅନ୍ତରର ଇଚ୍ଛା ତୁମେ ଦୁଇଜଣ ସେହି ମହାନ୍ ଈଶ୍ବରଙ୍କ ଦୟାରୁ ସୁଖୀ ହୁଅ—ଆଉ—"

ଠିକ୍ ଏତିକି ସମୟରେ ଝିଟିପିଟି ଟିଏ କେଉଁଠାରୁ ଡାକି ଉଠିଲା—"ଠିକ୍-ଠିକ୍-ଠିକ୍—"

ଅଜିତ ଉତ୍ଫୁଲ୍ଲିତ ସ୍ୱରରେ କହି ଉଠିଲା—"ଶୁଣିଲୁ, ଝିଟିପିଟି କଣ କହିଲା ? ମୁଁ ନିଶ୍ଚୟ କହିବ । ଆଉ ତୋର ସେଙ୍କୁ ଭଲରୂପେ କହିଦେଇଥିବ, "ଆମୋଦେ ଏ ଚିରଦୁଃଖୀନୀ ସଙ୍ଗିନୀଟିକୁ ଆପଣ ଅନ୍ତର—"

"ଥାଉ—ଥାଉ ଅଜିତ, ଚୁପ୍ ହେ—ବାଜେ କଥା ଗୁଡ଼ାକ କହନା ।" ପ୍ରଣତି ଅଭିମାନ ସ୍ୱରରେ କହି ଉଠିଲା । ଅଜିତ ତାର ମର୍ମସ୍ଥଳକୁ ନିର୍ମମ ଆଘାତ କରିଛି ! ! ତାପରେ କାଳେ ଅଜିତ ସନ୍ଦେହ କରିବ ଏହି ଆଶଙ୍କାରେ କଥାଟାକୁ ଫେରାଇ ଆଣି ସେ ଆରମ୍ଭ କଲା, "ତୁ ବାହାହେଲା ପରେ, ମୋତେ ଆଉ ମନେ ରଖିବୁ ଅଜିତ ?"

Digitized by srujanika@gmail.com

ପ୍ରଣତିର ସ୍ନିଗ୍ଧ କୋମଳ ଗଣ୍ଡ ଉପରେ ଦୁଇ ବିନ୍ଦୁ ତପ୍ତ ଅଶ୍ରୁ ଟପ୍ ଟପ୍ ହୋଇ ଝରିଲା । ବ୍ୟାକୁଳକଣ୍ଠରେ ଅରବିନ୍ଦ କହି ଉଠିଲେ —"ପ୍ରଣତି—ତୁ କାନ୍ଦୁଛୁ ! କାହିଁକି କାନ୍ଦୁଛୁ ?

ଓ—ମୋ ସହିତ ବିଚ୍ଛେଦ ହୋଇଯିବ ବୋଲି ପ୍ରଣତି, ତୁ ସତରେ କଣ ଭାବୁଛୁ ଯେ ମୁଁ ତତେ ଭୁଲିଯିବି ବୋଲି ? ତାହେଲେ କଣ ମୁଁ କେବେ ଭୁଲିପାରେ ! ଛିଃ ! କାନ୍ଦନା—ମୁଁ ତ ବାହାହେଲା ପରେ ମଧ୍ୟ ଏଠାରେ ରହିବି—"

ପ୍ରଣତି କାନ୍ଦିବାକୁ ଲାଗିଲା । ମନ ତାର କହୁଥିଲା, "ହାୟ ଅରବିନ୍ଦ ! କେଡ଼େ ସରଳ ମନ ତୋର । ତୁ ବୁଝିପାରୁନାହୁଁ—ତୁ ବୁଝି-ପାରିବୁ ନାହିଁ ମୋର ବ୍ୟଥା ! ନ ବୁଝିବା ହିଁ ତୋ ପକ୍ଷରେ ମଙ୍ଗଳ । ତୁ ଭିତରକଥା କେବେ ବୁଝିପାରନା । ଯାହା ଭାବୁଛୁ, ତୋ ପାଇଁ ମୁଁ କାନ୍ଦୁଛି, ତାହାହିଁ ଭାବି ରଖ୍ !"

ପ୍ରଣତି କାନ୍ଦିବାକୁ ଲାଗିଲା । ତା'ର ଭାବୀ ବିଚ୍ଛେଦ କଥା ଭାବି ଏପରି କାନ୍ଦୁଛି' ବୁଝି, ଅରବିନ୍ଦ ସାନ୍ତ୍ୱନା ଦେବାକୁ ଲାଗିଲା । କିନ୍ତୁ ଅରବିନ୍ଦ ଜାଣି ପାରିଲା ନାହିଁ, ସେ ସାନ୍ତ୍ୱନା-ଛଳରେ ପ୍ରଣତିର ହୃଦୟକୁ ନିର୍ମମ ଭାବେ ଆଘାତ କରୁଥିଲା ।



ରମବାବୁ ପ୍ରଶ୍ନ କଲେ,"ଅତଡ଼ କାହିଁ—?"

ନିର୍ଜିବ କଣ୍ଠରେ ଉମା ଉତ୍ତର ଦେଲେ,' ପ୍ରଣତ ପାଖକୁ ଯାଇଛି—"

ରମବାବୁ ଅଜି କିଛି ନ କହି ଜଳଖିଆ ମାଗିଲେ । ଜଳଖିଆ ଦେଇସାରି ଉମା ସ୍ୱାମୀଙ୍କ ନିକଟରେ ବସିଲେ । ପତ୍ନୀଙ୍କର ଶୁଷ୍କ ମୁଖ ଦେଖି ରମବାବୁ ଶଙ୍କିତ ହୋଇ କାରଣ ପଚାରିଲେ । ସୁରେଶ ଆଉ ଅତଡ଼ର ପ୍ରତ୍ୟେକ କଥା ଉମା ଶୁଣିଛନ୍ତି ।—"ତା ହେଲେ ଉଷାଙ୍କ ନିକଟରେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ତା ଅଉ ସେ ରକ୍ଷା କରିପାରିଲେ ନାହିଁ? ଏଥର ଉଷା ନିକଟରେ ସେ ମୁହଁ ଦେଖାଇବେ କିପରି ? କଥାଟା ଏତେ ଦୂର ଗଲାଣି ଅଥଚ ମା' ହୋଇ ସେ ଏଥିର ବିନ୍ଦୁମାତ୍ର ଜାଣିପାରିଲେ ନାହିଁ ? ଯା ପରେ ସୁରେଶ ସଙ୍ଗେ ଅତଡ଼ର ବିବାହ ଦେବାଛଡ଼ା ଅଉ କଣ ଉପାୟ ଅଛି?——ପ୍ରଣତ, ତୁ ହାରିଗଲୁ ମା ! ଏ ଯୁଦ୍ଧରେ ଅତଡ଼ ହିଁ ଜୟଲାଭ କଲା । ଶାସ୍ତ୍ରରେ ଯେ ଅଛି," ସୁନ୍ଦର ମୁହଁର ଜୟ ସର୍ବତ୍ର !"

ଉମାଙ୍କ ଚିନ୍ତା · ସେତିକିବେଳଠାରୁ ଗୋଳେଇ-ଘାଣ୍ଟି ହୋଇଥିଲା ।

[illegible] ଓ ସୁରେଶ ସମ୍ବନ୍ଧିତ ଘଟଣା [illegible]ଙ୍କ ବିଷୟଟା ନିଧି ଜଣାଇ ଦେଲେ । [illegible] ନିବଟିକୁ ଦେଖିଲେ— ସୁରେଶ ସହିତ [illegible] ଯେସବୁରେ । ସୁରେଶ ଯେ

ଜଣେ ସତ୍‌ପାତ୍ର; ଏ ବିଷୟରେ ସନ୍ଦେହ ନାହିଁ । ଶେଷରେ ତାକୁ ଦେବାଟା ହିଁ ସ୍ଥିର ହେଲା ।

ଉମା କହିଲେ, "ସୁରେଶର ମା'ଙ୍କ ମତାମତ ଜାଣିବାକୁ ହେବ—ମୋର ଯେତେ ଦୂର ମନେ ହେଉଛି, ତାଙ୍କର ମଧ୍ୟ ପ୍ରଶଷ୍ଟକୁ ବୋହୂ କରିବାକୁ ଇଚ୍ଛା ଥିଲା । ସେ ଉଷା'ର ଅନେକ ଦିନର ସାଙ୍ଗ ।"

ରାମବାବୁ କହିଲେ—"ତାଙ୍କର ଇଚ୍ଛା ଥିଲେ କଣ ହେଲା ? ସବୁ ତ ସୁରେଶ ଉପରେ ନିର୍ଭର କରେ—ମୁଁ ଯାଇ ତାଙ୍କ ମାଙ୍କ ପାଖରେ ପ୍ରସ୍ତାବଟା ପକାଇବି ।"

× × × ×

ରାମବାବୁ କଥାଟା କହିବାର ଅନେକ ଆଗରୁ—ସୁରେଶ ଜନନୀଙ୍କ ନିକଟରେ ସ୍ବଇଚ୍ଛାଟା ପ୍ରକାଶ କରିଦେଇଥିଲା । ପ୍ରଥମେ ରେଖା ଘୋର ଆପତ୍ତି ଜଣାଇଲେ । ପୁତ୍ରକୁ ଉଷା'ଙ୍କର ଏକାନ୍ତ ଆଶା କଥା ଜଣାଇ ବୁଝାଇବାକୁ ଚେଷ୍ଟା କଲେ; କିନ୍ତୁ ସୁରେଶ ସବୁ ଶୁଣି ଗୋଟିଏ ମାତ୍ର ଉତ୍ତର ଦେଲା, "ଅରକ୍ଷ ଛଡ଼ା ମୁଁ ଅନ୍ୟ କେଉଁଠି ବାହା ହୋଇପାରିବି ନି-"

ଉଷା ଯେ ଏ ସମ୍ବାଦ ଶୁଣି ଏକବାରେ ଭାଙ୍ଗିପଡ଼ିବେ, ସେଥିରେ ବିନ୍ଦୁମାତ୍ର ସନ୍ଦେହ ନାହିଁ ।

ଶେଷରେ କଣ ସେ ନିଜେ ଉଷାଙ୍କର ମହାଶତ୍ରୁ ହେବେ ! ହତଭାଗିନୀ ଉଷା ଯେ ସୁରେଶକୁ ନିଜର କରି ନେଇସାରିଥିଲା କିପରି ସେ ତାଙ୍କ ଆଗରେ ମୁହଁ ଦେଖାଇବେ ?" ରେଖା କିଛି ଭାବି ଠିକ୍ କରିପାରିଲେ ନାହିଁ । ଶେଷକୁ ସୁରେଶର ଇଚ୍ଛାକୁ ସମର୍ଥନ ଜଣାଇବା ଛଡ଼ା ଅଉ କିଛି ଉପାୟ ରହିଲାନି ତାଙ୍କର । ଲଜ୍ଜାରେ, ଭୟରେ ସେ

Digitized by srujanika@gmail.com

ଥରେ ହେଲେ ଯା ପରେ ଉଷାଙ୍କ ପାଖକୁ ଗଲେନାହିଁ । ଉଷା ଯେତେ-ବେଳେ ଯାଇଁ କୈଫିୟତ୍ ତାଙ୍କଠାରୁ ଚାହିଁବେ । ସେ ଉତ୍ତର ଦେବେ କଅଣ ?

ରାମବାବୁଙ୍କୁ ବାଧ ହୋଇ ସେ ବିବାହରେ ସମ୍ମତ ଅଛି ବୋଲି ଜଣାଇଲେ । ଉଷାଙ୍କ ନାଁ ଧରିବାକୁ ତାଙ୍କର ସାହସ ହେଲାନାହିଁ ।

× × × ×

ମହାସମାରୋହରେ ଆରତିର ବିବାହର ଆୟୋଜନ ହେବାକୁ ଲାଗିଲା । କିନ୍ତୁ ଗୋଲମାଲଟା ଆରମ୍ଭ ହେଲା ଯେତେବେଳେ, ପୁରୋହିତ ମହାଶୟ ପାଞ୍ଜି ଫିଟାଇ କହିଲେ, "ଏ ଚୈତ୍ରମାସ ଭିତରେ ବିବାହର ଯୋଗ ନାହିଁ । ରାମବାବୁଙ୍କର ଇଚ୍ଛା ଥିଲା, ଏ ମାସଟା ଭିତରେ ବାହାଘରଟା ଶେଷ ହୋଇଯାଇଥାନ୍ତା ; କାରଣ ଶାସ୍ତ୍ରରେ ଅଛି, "ଶୁଭସ୍ୟ ଶୀଘ୍ରଂ..."

କିନ୍ତୁ କଣ ଅଉ କରିବେ ? ଆଷାଢ଼ରେ ବିବାହ ଅନୁଷ୍ଠାନଟା ସ୍ଥଗିତ ରହିଲା ।

ସୁରେଶ ମଝି ମଝିରେ ଆସେ ଆରତି ପାଖକୁ । ପ୍ରଥମେ ଜବା ଏ କଥାଟିରେ କ୍ଷୁବ୍ଧ ହୋଇ ସ୍ୱାମୀଙ୍କ ଆଗରେ ଅଭିଯୋଗ ଜଣାଇଥିଲେ, "ଆରତି ତ ଆଉ କୁଆ ଝିଅ ହୋଇନାହିଁ—ସୁରେଶର ଏଠାକୁ ଆସିବା ସୁନ୍ଦର ଦିଶିନେ—"

ସ୍ତ୍ରୀଙ୍କ ଅଭିଯୋଗ ଶୁଣି ରାମବାବୁ ହସିହସି କହିଲେ, "ଜବା, ଆରତି ସୁରେଶର ସ୍ତ୍ରୀ । ସେ ହେଲେ ଭାବିବାର କୌଣସି କାରଣ ନାହିଁ—"

× × × ×

Digitized by srujanika@gmail.com

ସେଦିନ ଘର ଉପରେ ଦୁଇଜଣଯାକ ପାଖପାଖି ହୋଇ ବସିଛନ୍ତି। ଅସ୍ତମିତ ରବିଙ୍କର ରକ୍ତିମ ପ୍ରଭା ଆରତିର ମୁହଁଟି ଉପରେ ହାତ ବୁଲାଇ ଦେଉଛି। ସୁରେଶ ସେହିଆଡ଼କୁ ଚାହିଁ ରହିଛି ନିର୍ନିମେଷ ନୟନରେ—ଆଜି କାହିଁକି ତା ମୁହଁଟା ବଡ଼ ସୁନ୍ଦର ଦେଖା-ଯାଉଥିଲା।

କିଛିକ୍ଷଣପରେ ଦୀର୍ଘନିଃଶ୍ୱାସଟିଏ ପକାଇ ସୁରେଶ କହିଲା, ଆରତି, ଆଉ ମାସେ ରହିଲା ନା ? ମାସକ ପରେ ଠିକ୍ ଏହିଦିନ ଆମ ଦୁଇଜଣ-ଙ୍କର ବାହାଘର ହେବ, କିନ୍ତୁ—" ମୁହୂର୍ତ୍ତକ ପାଇଁ ସେ ସ୍ତବ୍ଧ ହୋଇଗଲା—

ଆରତି ତାର ଆକର୍ଣ୍ଣ-ବିସ୍ତୃତ ଆୟତ ଚକ୍ଷୁ ଦୁଇଟି ସୁରେଶର ମୁହଁ ଉପରେ ସ୍ଥାପନ କରି ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲା।

ସୁରେଶ ଆରତିର ଦୃଷ୍ଟି ସହିତ ନିଜର ଦୃଷ୍ଟି ମିଳାଇ ଦେଇ କହିଲା, "ଆରତି, ମୋର କାହିଁକି ମନେ ହେଉଛି, ମୁଁ ତୁମକୁ ପାଇ ପାରିବିନି, ତୁମେ ମୋର ହୋଇ ହେଲେ ମଧ୍ୟ !! କହ ଆରତି, ଏପରି କାହିଁକି ମନେ ହେଉଛି, ସତେ କଣ ଆମର ମିଳନ ହେବ, ନାହିଁ ?"

ସୁରେଶର କଥା ଶୁଣି ଆରତିର ଅନ୍ତର ଅଜଣା ଭୟରେ ଶିହରି ଉଠିଲା। ବ୍ୟାକୁଳ ନେତ୍ରରେ ସୁରେଶ ଆଡ଼କୁ ଚାହିଁ ସେ କହିଲା, "ଛିଃ ! ତୁମେ କାହିଁକି ଅଦ୍ଭୁତ କଥା ଗୁଡ଼ାକ ଭାବୁଛ ?"

ଆରତିର କୋମଳ ହସ୍ତଟି ସୁରେଶର ହସ୍ତ ଉପରେ ନ୍ୟସ୍ତ ହେଲା। ଆରତିର ଭୟ-ବିବର୍ଣ୍ଣ ମୁହଁକୁ ଦେଖି ସୁରେଶ ତାକୁ ସାନ୍ତ୍ୱନା ଦେବା ଚ୍ଛଳରେ ମନ ଉପରକୁ ଅଳ୍ପ ହସ ଟାଣିଆଣି ତାର ହାତଟି

Digitized by srujanika@gmail.com

ନିଜର ହାତ ଉପରେ ଧରି କହିଲା, "ଥରଛ, ହୁଏତ ଏ ମୋର ବ୍ୟାକୁଳ ମନର ତୁଚ୍ଛ ଅଶଙ୍କା, ତୁମେ କିଛି ଭାବ ନାହିଁ ।"

ସୁରେଶର ସାନ୍ତ୍ୱନା ବାକ୍ୟ ଶୁଣି ମଧ୍ୟ ଅରୁଣର ଅନ୍ତଃ ଶାନ୍ତ ହେଲନାହିଁ ॥ ମନେ ମନେ ସୁରେଶର ସେହି କଥାଟାକୁ ଖେଳିବାକୁ ଲାଗିଲା । ହୁଏତ ଏଇଟା ସୁରେଶର ବ୍ୟାକୁଳ ମନର ତୁଚ୍ଛ ଅଶଙ୍କା—" ମନକୁ ବୁଝାଇଲା ସେ କିନ୍ତୁ ତା ମନଟା ଶାନ୍ତ ହେଲନାହିଁ !

ସୁରେଶ ଅରୁଣର ହାତଟିକୁ ନେଇ ଖେଳିବାକୁ ଲାଗିଲା ॥ ଖେଳାଛଳରେ ନିଜର ଅଙ୍ଗୁଳିରେ ଥିବା ନୀଳ-ପଥରର ଅଙ୍ଗୁରୀୟଟି କାଢ଼ି, ଅରୁଣର ସୁକୁମାର ଅଙ୍ଗୁଳିରେ ପିନ୍ଧାଇ ଦେଉ ଦେଉ କହିଲା, "ଥରଛ, ଏଇଟା ଆମର ବନ୍ଧନ ଚିହ୍ନ ! ଏଇଟା ଥିଲେ ଆମର କେବେ ବିଚ୍ଛେଦ ହୋଇପାରିବ ନାହିଁ—"

ଅରୁଣ ତପ୍ତ-କାଞ୍ଚନ ବର୍ଣ୍ଣ ଅଙ୍ଗୁଳି ଉପରେ ସୁନୀଳ ପଥରଟି ଯେପରି ହସି ଉଠିଲା । ଧୀରେ ଧୀରେ ଅରୁଣ ହାତଟିକୁ ଟାଣି ଆଣିଲା ॥ ଅଙ୍ଗୁରୀୟଟି ଫେରାଇଦେବା କଥା ଥରେ ମନେ ହେଲା ତାର; କିନ୍ତୁ ପରକ୍ଷଣରେ ସେ ଭାବିଲା, "ଥାଉ ସୁରେଶର ପ୍ରେମର ଦାନ ଫେରାଇ-ଦେବା ଉଚିତ ନୁହେଁ । କିନ୍ତୁ ପ୍ରତିଦାନରେ କଣ ଦେବ କିଛି ଭାବି ପାରିଲା ନାହିଁ ।

ସୁରେଶ ତାକୁ ଅପ୍ରସ୍ତୁତ କରିବା ପାଇଁ ତା ହାତଟା ହଲାଇ ଦେଇ କହିଲା, "ଥରଛ, ପ୍ରତିଦାନରେ ମତେ କିଛି ଦେଲେ ଦେବ ନାହିଁ ?"

Digitized by srujanika@gmail.com

ଅରତିର ମୁଣ୍ଡରେ ମଧ୍ୟ ଦୁଷ୍ଟ ବୁଦ୍ଧି ଖେଳିଗଲା, ରକ୍ତ-ଜବା ସମ ଅଧର ଉପରେ ଦୁଷ୍ଟାମୀର ହସ ଖେଳାଇ ଦେଇ ସେ କହିଲା, "ଦେଖ— କଷ୍ଟେ ପ୍ରତିଦାନ ଦେବ କାହୁଁ ଏବେ ନୁହେଁ—ତୁମେ ଯେଉଁଦିନ ଅନ୍ୟ ଜଣକୁ ବାନ୍ଧାହେବ—"

ସୁରେଶ ରାଗିଯାଇ କହିଲା, "ଇସ୍ ! ନା, ପ୍ରତିଦାନ ଦେବାକୁ ଲୋଡ଼ା ନାହିଁ । ଅଚ୍ଛା, ରହିଥାଅ ! ତୁମର ଏ ଦୁଷ୍ଟାମିର ଶାସ୍ତି ବାନ୍ଧାଠା ହୋଇଗଲା ପରେ କଷ୍ଟେ ପାଇବ ମନେ ରଖିଥାଅ । ଭୀଷଣ ଶାସ୍ତି—"

ଦୁଇଜଣଯାକ ହସି ଉଠିଲେ ।

ରାମବାବୁ ଓ ଉମା, ଜଣେକ ବନ୍ଧୁଙ୍କର ନିମନ୍ତ୍ରଣ ରକ୍ଷା କରିବାକୁ ଯାଇଥିଲେ । ମଟରଗାଡ଼ିର ଗର୍ଜନ ଶୁଣାଗଲା ।

ସୁରେଶ ଉଠିପଡ଼ି ଅରତିର ଦୁଇହାତକୁ ନିଜର ଦୁଇହାତ ଭିତରେ ମୁହୂର୍ତ୍ତିକ ପାଇଁ ଦୃଢ଼ଭାବରେ ଧରି ପରକ୍ଷଣରେ ଛାଡ଼ିଦେଲା ଏବଂ କହିଲା, "ଅଚ୍ଛା ଅରତି, ଆଜିକ ପାଇଁ ବିଦାୟ ନେଉଛି ।"



Digitized by srujanika@gmail.com

—ନଅ—

ଆରତି ଓ ସୁଧାଂଶୁର ବିବାହ—ଶୁଣି ଉଷା ଦେବୀ ସ୍ତମ୍ଭିତ ହୋଇଗଲେ । ପ୍ରାଣ-ସମ ଉମା ଆଜି ଦେଖା ଯେ ଏହିପରି ବିଶ୍ୱାସ-ଘାତକତା କରିବେ, ତା ସେ କଳ୍ପନା କରିନ ଥିଲେ କେଉଁଦିନ । ଓହୋ ! ସେ ଦିନ ସେ ଏତିକି ବୁଝାଇଥିଲା ପରେ ମଧ୍ୟ ଉମା ଏହିପରି କଲା ? ଉଷା ଦୁଇହାତରେ ମୁଣ୍ଡଟାକୁ ଚିପି ଧରି ବସି ପଡିଲେ । କ୍ଷଣକ ଭିତରେ ଛାୟା-ଛବି ପରି କେତେ ଭାବନା ଖେଳିଗଲା ମନ ଭିତରେ—ପ୍ରଶାନ୍ତର ପ୍ରାଂଶୁମୂର୍ତ୍ତି, ତାର ଭଗ୍ନ ହୃଦୟର ପ୍ରତି ଛବି ସେ ଯେପରି ସ୍ପଷ୍ଟ ଦେଖି ପାରୁଥିଲେ । ମନେ ପଡିଲେ, ସେ ଦିନ ପ୍ରଶାନ୍ତ କିପରି ତାଙ୍କ କୋଳରେ ମୁହଁ ଲୁଚାଇ ବ୍ୟାକୁଳ କଣ୍ଠରେ କହିଥିଲା ଯେ, ଅଞ୍ଜୁ ସୁଧାଂଶୁକୁ ଭଲପାଏ । କିନ୍ତୁ ସେ ଦିନ ସେ ଠିକ୍ ବିଶ୍ୱାସ କରି ପାରି ନ ଥିଲେ, ପ୍ରଶାନ୍ତର କଥାଟାକୁ ପ୍ରଶାନ୍ତର ବିସ୍ତାରିତ ବିବରଣୀ ଭିତରେ ଏ ସମ୍ବନ୍ଧୀୟ କିଛି କଥା ନ ଦେଖି ।

ସେ ଦିନ ସେ ବୁଝିଥିଲେ, ତାଙ୍କର ପ୍ରଶାନ୍ତ ସୁଧାଂଶୁକୁ ଏତେ ଭଲପାଏ ଯେ, ସୁଧାଂଶୁ ତୁମ୍ଭଠାରୁ ଅନ୍ତରର ନାଁ ଶୁଣି ପ୍ରାଣରେ ଏତେ ଆଘାତ ପାଇଛି । କଥାଟା ଜାଣି ସେ ଦିନ ଉଷା ଆନନ୍ଦିତ ହୋଇଥିଲେ । ମନେ ମନେ ଗର୍ବ ହେଉଥିଲା । ସେ କନ୍ୟାର ମନୋମତ ସ୍ୱାମୀ ଠିକ୍ କରିପାରିଛନ୍ତି । ପ୍ରଶାନ୍ତକୁ କିଛି ନ କହି ଖାଲି ପରିଶ ବୁଝାଇ ସାନ୍ତ୍ୱନା ଦେଉଥିଲେ ସେ । ପ୍ରଶାନ୍ତର ବ୍ୟାକୁଳ ଭାବକୁ ସେ ଈର୍ଷା ବୋଲି ମନେ କରିଥିଲେ କିନ୍ତୁ...

Digitized by srujanika@gmail.com

କିନ୍ତୁ ଶେଷରେ ଯେ ପ୍ରଣତିର କଥା ହିଁ ଅକ୍ଷରେ ଅକ୍ଷରେ ସତ୍ୟରେ ପରିଣତ ହୋଇଯିବ, ଯାହା କଣ ସେ ସ୍ୱପ୍ନରେ ସୁଦ୍ଧା ଭାବିଥିଲେ କାରଣ ଜନ୍ମ ଆଉ ରେଖା ଉପରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ଶେଷରେ ସେମାନେ ତାଙ୍କୁ ଅସହାୟ ପାଇ କୁରାଢ଼ୀ ମାରିଲେ ତାଙ୍କ ପାଦରେ ?

ଉଷାଙ୍କର ଇଚ୍ଛା ହେଲା ଡାକ ପକାଇ କାନ୍ଦିବାକୁ । ବର୍ତ୍ତମାନ ସେ ପ୍ରଣତିକୁ ନେଇ କଣ କରିବେ ? କାହିଁକି ରେଖା ଉପରେ ଦୃଢ଼-ବିଶ୍ୱାସ ସ୍ଥାପନ କରି ସେ ପ୍ରଣତିକୁ ସୁରେଶ ସହିତ ମିଳାମିଶି କରିବା ପାଇଁ ଛାଡ଼ିଦେଲେ ? କାନ୍ଥରେ ମୁଣ୍ଡ ପିଟିବାକୁ ଇଚ୍ଛା ହେଲା ତାଙ୍କର ।

ଦୁଇ ନଉକାରେ ପାଦ ଦେଇ ଠିଆ ହେଲା ପରି ଅବସ୍ଥା ତାଙ୍କର । ବଞ୍ଚିବାକୁ ହେଲେ ଗୋଟିଏ ନଉକାକୁ ଛାଡ଼ିବାକୁ ହେବ । ଆରତିର ଅମଙ୍ଗଳ ସେ କେବେ କରିପାରିବେ ନା ; ଆରତିର ମଧୁର କଣ୍ଠର ଡାକ, "ମାଉସୀ—" ସେ ଯେପରି ସ୍ପଷ୍ଟ ଶୁଣିପାରିଲେ । ପର ମୁହୂର୍ତ୍ତରେ ଭାସି ଆସିଲା ପ୍ରଣତିର ପାଂଶୁ ମୁହଁଟି । କଣ କରିବେ— କଣ କରିବେ ସେ ?"

"ପ୍ରଣତି—ମା !"

ମାଙ୍କ ଡାକ ଶୁଣି ପ୍ରଣତି ଥରେ ମୁହଁ ଟେକି ଚାହିଁ ଆଉଥରେ ଶେଯରେ ମୁହଁ ଲୁଚାଇଦେଲା । ମାତ୍ର କ୍ଷଣକ ପାଇଁ କନ୍ୟାର ରକ୍ତଶୂନ୍ୟ ମୁହଁଟିକୁ ଦେଖି ଉଷାଙ୍କ ବକ୍ଷଭିତରେ କିଏ ଯେପରି ଛୁରୀ ମାରିଦେଲା । "ଶରୀର ଅସୁସ୍ଥର ବାହାନାରେ ପ୍ରଣତି ଏ କେତେଦିନ ହେଲା କଲେଜକୁ ଯିବା ଛାଡ଼ି ଦେଇଛି । ଏ କେତେଦିନ ଭିତରେ ସେ ପ୍ରକୃତରେ ରୋଗୀ ପାଲଟି ଯାଇଛି ।

Digitized by srujanika@gmail.com

ଶେଯ ଉପରେ ବସି ପ୍ରଣତିର ମୁଣ୍ଡରେ ହାତ ବୁଲାଇବାକୁ ଲାଗିଲେ ଉଷା । କଥା କହିବା ଶକ୍ତି ଯେପରି ତାଙ୍କର ଲୁପ୍ତ ହୋଇ-ଯାଇଛି ।

ପ୍ରଣତି ଠିକ୍ କରିଥିଲା, ସେ ଅମୃତ୍ୟାଗ କରିବ ଅରୁଣ ପାଇ କିନ୍ତୁ ଦଣ୍ଡନେବା ପାଇଁ ନିର୍ଦ୍ଦିଷ୍ଟ ସମୟଟା ଯେତେ ପାଖେଇ ଆସୁଥାଏ, ଅପରାଧୀର ପ୍ରାଣ ତେତେ ଅଧୀର ହୋଇ ଉଠୁଥାଏ । ସେହିପରି ଅରୁଣର ବିବାହ ଦିନ ଯେତେ ପାଖେଇ ଆସୁଥିଲା ଯୂପ—କାଠରେ ବଳି ଦେବା ପାଇଁ ବନ୍ଧା ହୋଇଥିବା ମେଣ୍ଢା ଯେପରି ଛଟ ଛଟ ହେଉଥାଏ ସେ ସେହିପରି-ଛଟପଟ ହେଉଥିଲା । ଅରୁଣ ତାର କଲିଜାଟା ଛିଣ୍ଡାଇ ନେବାକୁ ବସିଛି—ନେଇଯିବ ଆଉ କେତେଦିନପରେ—ତାପରେ ତାର ଆଉ କଣ ବାକି ରହିବ ? ମା'ଙ୍କ ନିକଟରେ ସେ ନିଜକୁ ଲୁଚାଇ ରଖିପାରେନା ଶତଚେଷ୍ଟା କରି ସୁଦ୍ଧା ।

ତାର ଆଉ ସେ ଲାବଣ୍ୟଭରା ମୂର୍ତ୍ତି ନାହିଁ । ଶବ ପରି ବିବର୍ଣ୍ଣ ରକ୍ତଶୂନ୍ୟ ମୁହଁ । ଆଖିଦୁଇଟା ଆରକ୍ତ । ଅବ୍ୟକ୍ତ ଯନ୍ତ୍ରଣାରେ ବିଷ ମୂର୍ଚ୍ଛିରହୁଛି ସବୁବେଳେ ।

'ମା—' ଉଷା, କିଛିକ୍ଷଣପରେ ଡାକିଲେ । ପ୍ରଣତି ଶିଶୁପରି ମୁହଁ ଲୁଚାଇ ଦେଲା ତାଙ୍କ କୋଳରେ । ନିଜକୁ ସଯତ କରିନେଇ ଉଷା ଗାଢ଼ କଣ୍ଠରେ କହିଲେ, "ପ୍ରଣତି, ଉଠ୍ ମା, ନିଜକୁ ଦୃଢ଼ କରିଦେ—ତା ଛଡ଼ା ଆମର ଯେ ଆଉ ଉପାୟ ନାହିଁ । ମା ହୋଇ ମୁଁ ଆଉ ତୋର ଏ ଦଶା ଦେଖି ସହି ପାରୁନି—ବିଧାତାଙ୍କ ଇଚ୍ଛା ଅନୁସାରେ ଅରୁଣ ବାହା ହେଉ ସୁରେଶକୁ—"

Digitized by srujanika@gmail.com

ଉଷା ଦେବୀ ସ୍ତବ୍ଧ ହୋଇଗଲେ । ଦୁଇବିନ୍ଦୁ ଅଶ୍ରୁ ତାଙ୍କର ଶବ୍ଦ ବାଧା ନ ମାନି ଚହ୍ଲିପଡ଼ିଲା ପ୍ରଣତିର ମୁଣ୍ଡ ଉପରେ ।

ପ୍ରଣତିର କନ୍ଦନବେଗ ଅଧିକର ବଢ଼ିଗଲା ।

ଉଷା କମ୍ପିତ କଣ୍ଠରେ ଅନ୍ତଅରେ କଥା ଆରମ୍ଭ କଲେ—"ହଁ, ବଧୂ ଯାହାକୁ ଯେଉଁଠାରେ ଖୋଜିଛନ୍ତି, ସେ ସେହିଠାରେ ନ ରହିବ କପରି ? ସବୁ ବିଧାତାର ଇଚ୍ଛା ! ଅଦୃଷ୍ଟ !" ହଁ ! ଅଦୃଷ୍ଟ କୁ ହିଁ ମାନି ନେଉଛନ୍ତି ଉଷା ! ନ ମାନି ଉପାୟ ବା କଣ ?

"ପ୍ରଣତି—ତୁ ମୋର ଗୋଟିଏ ଝିଅ, ମୋର ଏକମାତ୍ର ଭରସା । ତତେ ଦେଖିଲେ ମୋର ସବୁ ଆଶା, ଆନନ୍ଦ ! ପ୍ରଣତି, ମା ମୋର, ତୁ ମନକୁ ଦୃଢ଼ କର । ସୁରେଶ ପରି ବର ତ ଆଉ ନ ମିଳି ରହିବେନି— ମୁଁ ସୁରେଶ ପରି, ଏପରିକି ସୁରେଶ ଠାରୁ ଅଧିକ ଗୁଣର ପାତ୍ର ଖୋଜିଦେବି, ତୁ ଘରଦ୍ୱାର କରି ସୁଖରେ ରହିଲେ, ମୁଁ ଶେଷକାଳରେ ନିଶ୍ଚିନ୍ତରେ ଆଖି ବୁଜି ମରିପାରିବି । ଉଠ୍ ତୁ, ମଣିଷ ହେବାକୁ ଗଲେ କେତେଅର ମାଡ ଖାଇବ କୁ ହେବ-ସହିବାକୁ ପଡ଼ିବ ! ପ୍ରଣତି—ତୋ ଛଡ଼ା ଯେ ମୋର ଏ ଜଗତରେ କେହି ନାହିଁ ! "

ଧୀରେ ଧୀରେ ଲୁହ ବହି ଯିବାକୁ ଲାଗିଲା ଉଷାଙ୍କ ନେତ୍ରରୁ ।

କନ୍ଦନ—ରୁଦ୍ଧ କଣ୍ଠରେ ପ୍ରଣତି କହିଉଠିଲା—ନା ମା, ତମେ ଆଉ ମତେ ବାହା ଦେବାକୁ କହନାହିଁ—ମୁଁ ବାହା ହୋଇ ପାରିବିନି ଆଉ—ଚିରକୁମାରୀ ହୋଇ ରହିବି ! ! "

ପ୍ରଣତିର ଜଡ଼ିତ କଣ୍ଠସ୍ୱରରୁ ଏପରି ଗୋଟିଏ ଦୃଢ଼ ଭାବ ଫୁଟି ଉଠିଲା ଯେ, ଉଷା ସ୍ତମ୍ଭିତ ହୋଇ ବସି ରହିଲେ । ପ୍ରଣତିର ପ୍ରତ୍ୟେକ କଥା ଯେ ସତ୍ୟ, ତା ବୁଝିବାକୁ ତାଙ୍କର ବିଳମ୍ବ ହୋଇନାହିଁ । ଆଜି,

Digitized by srujanika@gmail.com

ପ୍ରଶାନ୍ତକୁ ସାନ୍ତ୍ୱନା ଦେବାକୁ ଆସିଥିଲେ ସେ ଅନେକ କଥା ଭାବି । ତାଙ୍କର ଧାରଣା ଥିଲା, ବୁଝାଇ କହିଲେ ପ୍ରଶାନ୍ତ ଆଉ କାହାକୁ ବାନ୍ଧା ଦେବାକୁ ନାହିଁ କରିବ ନାହିଁ । କିନ୍ତୁ କନ୍ୟାର ବାକ୍ୟ ଶୁଣି ସେ ମୂକ ହୋଇଗଲେ ଯେପରି ।

ଯ୍ୟାପରେ କଣ କରିବେ ସେ ? ତାଙ୍କର ଗୋଟିକ ମାତ୍ର ସନ୍ତାନ ସନ୍ନ୍ୟାସିନୀ ସାଜି ଆଖି ଆଗ-ର ସବୁ ଥିବ, ଆଉ ସେ ତା' ନିଜ ଆଖିରେ ଦେଖୁଥିବେ ? ନା, ନା ! ଯ୍ୟା ସେ କଦାପି ଦେଖିପାରିବେ ନାହିଁ, ସହିପାରିବେ ନାହିଁ । କଣ କରିବେ ସେ ?

ପାଗଳୀପରି ଉଷା ପ୍ରଶାନ୍ତ ନିକଟରୁ ଉଠି ଆଜ ଗୋଟିଏ ଘରକୁ ଚାଲି ଆସିଲେ । ଝରକା ନିକଟରେ ଠିଆ ହୋଇ ଚାହିଁରହିଲେ ଉମାଙ୍କ ଘର ଆଡ଼କୁ । ଉମା ବସି ପଢିବା କାଟୁଛନ୍ତି—ପାଖରେ ବସିଛି ଅଶୋକ । ଅନେକ ସମୟରେ ଚାହିଁ ରହିଲେ ଉଷା—ହାସ୍ୟୋଜ୍ଜ୍ୱଳ ମୁହଁ ଉମାଙ୍କର, ହୃଦୟର ଆନନ୍ଦକୁ ସେ ଯେପରି ଲୁଚାଇ ପାରୁନାହାନ୍ତି ମୁହଁ ଦେଇ ଫୁଟି ଆସୁଛି ଆନନ୍ଦର ଆଭା ! ସସ୍ନେହ ତିରସ୍କାର କରୁଛନ୍ତି ସେ ଅଶୋକକୁ; ଅଶୋକର ଅଙ୍କଟା ପାଇଁ ଖୁଡୀ-ମା'ଙ୍କ କୃତ୍ରିମ ତିରସ୍କାରରେ ଅଶୋକ ଟିକିଏ ପରି ହସି ହସି ଢଳି ପଡୁଛି, ଉମାଙ୍କ ପିଠି ଉପରେ ! ଦୂରରେ ପାହାଡ଼ ଉପରେ ରବି ଶୋଭୁଛି । ସେ ମଧ୍ୟ ଯେପରି ହସ ତ ଗୋଡ଼ ହଲାଇ ନାଚି, ଆନନ୍ଦ ପ୍ରକାଶ କରୁଥାନ୍ତି !

ଉଷା ଆଉ ଥରେ ଆଡ଼କୁ ଚାହିଁଲେ—ଓଃ ! ଆରଥର ଏପରି ସୌନ୍ଦର୍ଯ୍ୟ ସେ କେବେ ଦେଖିନାହାନ୍ତି । ତାର ପ୍ରତିଫଳନ ଦେଇ ଯେପରି ସୌନ୍ଦର୍ଯ୍ୟ ପ୍ରଭା ବିଚ୍ଛୁରିତ ହୋଇପଡୁଛି । ମୁହଁରେ ଲଜ୍ଜାର ଆଭା । ଘନ ପକ୍ଷ୍ମ ବେଷ୍ଟିତ ବଡ ବଡ଼ ଆଖି ଦୁଇଟି ଚକ୍ ଚକ୍ କରୁଛି ଗୋଟିଏ ଅପରୂପ ଉଜ୍ଜ୍ୱଳତାରେ ଭରା ତାରକା ପରି ଝଲସି ଉଠୁଛି ।

Digitized by srujanika@gmail.com

ଆରତିର ସେଇ ଅପରୂପ ମୂର୍ତ୍ତି କଳ୍ପନାରେ ଭାସିଆସିଲା ପ୍ରଭାତର ସେହି କରୁଣ ମୂର୍ତ୍ତି । ଉଷା କ୍ରୋଧମୁଷ୍ଟିରେ ଝରକାର କବାଟକୁ ଠାଳୁ ଉଡ଼ ଧରିଲେ । ଆଜି ତାଙ୍କର ପ୍ରାପ୍ତ ଜୀବନକୁ ନେଇ ଉମା ଆଉ ଆରତିର କେତେ ଆନନ୍ଦ ।

ଉମା, ଆରତିର କଣ ଗୋଟିଏ ପିଲାଳିଆ କଥା ଶୁଣି ହସି ଉଠିଲେ । ଆରତି ମଧ୍ୟ ତାଙ୍କ ସଙ୍ଗେ ଯୋଗ ଦେଲା । ଆରତିର ସ୍ନିଗ୍ଧ ହାସ୍ୟ ବଂଶୀସ୍ୱନ ପରି ଗୃହଆଡ଼େ ଖେଳିଗଲା !

ଉଷାଙ୍କ ହାତମୁଠା ଅଧିକ ଟାଣ ହୋଇଗଲା; ପ୍ରଣୟ କଣ୍ଠସ୍ୱର ଶୁଣିଥିବ ଏ ହସ—ଭଗବାନ୍ ! ତା ହୃଦୟରେ କିପରି ଆଘାତ ଲାଗିନ ଥିବ !

ଯେତେ ଉମା ଆଉ ଆରତିକୁ ଦେଖିବାକୁ ଲାଗିଲେ, ସେତେ ଉଷାଙ୍କର ମୁହଁର ଭାବ ବଦଳି ଯିବାକୁ ଲାଗିଲା । ତାଙ୍କର କଠୋର ଚକ୍ଷୁରେ ଫୁଟି ଉଠିଲା । ଗୋଟିଏ ହିଂସ୍ରଭାବ । ତାଙ୍କର ବିବର୍ଣ୍ଣ ଅଧରରେ ଖେଳି-ଗଲା, ତୀକ୍ଷ୍ଣହାସ୍ୟର ରେଖା !

ହୃଦୟ ଭିତରେ ଲୁଚିରହିଥିବା ବିଦ୍ୱେଷୀ ମନ ମୁଣ୍ଡ ଟେକି ଉଠିଲା । କିଏ ଯେପରି ଅନ୍ତରଭିତରୁ କହିଲା—"ଉମା ଯଦି ତୋ ଜୀବନ ଛଡ଼ାଇ ନେଲା, ତୁ ତା'ଠାରୁ ଛଡ଼ାଇ ଆଣିଲେ ଦୋଷ କଣ ?"

ଉଷା ଝରକା ନିକଟରୁ ଧୀରେ ଧୀରେ ଚାଲିଆସି ଶେଯ ଉପରେ ବସି ପଡ଼ିଲା । ଆରତିର ଅପୂର୍ବ ସୁନ୍ଦର ମୁହଁ ଆଉ ପ୍ରଭାତର ବିବର୍ଣ୍ଣ ମୁହଁ ଦୁଇଟା ଯାକ ରହି ରହି ଭାସି ଆସୁଛି ଆଖି ଆଗରେ । ହୃଦୟ ଭିତରେ ଦୁଇଟି ମନର ଦ୍ୱନ୍ଦ୍ୱ ଲାଗିଛି !

Digitized by srujanika@gmail.com

ଉଷା ଅସ୍ଥିର ହୋଇ ସେ ଘର ଘରଯାକ ବୁଲିବାକୁ ଲାଗିଲେ । କୌଣସିମତେ ସେ ଯଦି ପ୍ରଣତିଙ୍କୁ ସୁରେଶ ସଙ୍ଗେ ବାହା କରାଇବେ, ତା ହେଲେ ଆରତିର ଜୀବନଟା ନଷ୍ଟ ହୋଇଯିବ ! ତା ଯଦି ନ କରିବେ, ତାହେଲେ ପ୍ରଣତିର ଜୀବନଟା ଛାରପୋଡ଼ ଯିବ ।

ଆରତି—ପ୍ରଣତି ! ପ୍ରଣତି—ଆରତି ! ଉଷା ପାଗଳ ପରି ଭାବିବାକୁ ଲାଗିଲେ । ମନେ ପଡ଼ିଲା, ଉମାଙ୍କର ଆନନ୍ଦୋଜ୍ଜ୍ୱଳ ମୁହଁ । ଯଦି ଆରତିର ଜୀବନ ନଷ୍ଟ ହୁଏ—ତାହେଲେ ଉମାଙ୍କ ଅବସ୍ଥାମଧ୍ୟ ତାଙ୍କ ପରି ହେବନି କି ? ମା'ନ ହେଲେ ମଧ୍ୟ ସେ ଯେ ଆରତିର ମା'ଠାରୁ ଅଧିକ !

ସରଳା ଆରତିର କୋମଳ ହୃଦୟରେ ସେ କିପରି ଏ ଆଘାତ ଦେବେ ? ବିଦ୍ରୋହୀ ମନ କହି ଉଠିଲା—"ପ୍ରଣତିର କଅଁଳ ହୃଦୟରେ ଉମା କିପରି ଆଘାତ ଦେଲେ ? ଦେଖ୍ ଉଷା । ଆରତିର ଜୀବନ ନଷ୍ଟ ହେଲେମଧ୍ୟ ଉମାଙ୍କ ସମ୍ବଳ ଅଛି ତାଙ୍କ ଶ୍ରେଷ୍ଠ ପୁଅ ଆଉ ସ୍ୱାମୀ ! ଆଉ ତୋର ? ତୋର କଣ ସମ୍ବଳ ରହିବ ପ୍ରଣତିର ଜୀବନ ନଷ୍ଟ କରିଦେଲେ !"

ଉଷା ଚମକି ପଡ଼ିଲେ । ସତେ ତ । ନାରୀର ଶ୍ରେଷ୍ଠ-ସମ୍ବଳ ତା' ସ୍ୱାମୀ ! ସେହି ଅମୂଲ୍ୟ ସମ୍ବଳରୁ ସେ ବଞ୍ଚିତ—ସ୍ୱାମୀହୀନା ହତଭାଗିନୀ ବିଧବା ସେ । ପ୍ରଣତି ବିନା ତାଙ୍କର ଯେ ଗତି ନାହିଁ ! ପ୍ରଣତି ସ୍ୱର୍ଗତ ସ୍ୱାମୀଙ୍କର ଏକମାତ୍ର ବଂଶଧର । ପ୍ରଣତିକୁ ଯଦି ସେ ଠିଆ କରାଇ ନ ପାରିବେ, ତେବେ ଯେ ବଂଶଲୋପ ହୋଇଯିବ ! ପ୍ରଣତି ଯେ ତାଙ୍କର ଜପ, ତପ, ପ୍ରାଣ, ଧ୍ୟାନ ସବୁ !

Digitized by srujanika@gmail.com

ଉନ୍ମାଦ ଗ୍ରେଗୀ ପରି ଉଷ ଜଳମର୍ମରେ ଏଣୁ ତେଣୁ କଥା-ଗୁଡ଼ାକ କହି, ଘରଯାକ ବୁଲିଲେ । ତାଙ୍କ ମନରେ କାଆଁ ଲାଗି ଯାଉଛି —ନା, ଖାଲି ମନରେ ନୁହେଁ ସର୍ବାଙ୍ଗରେ ! ତାଙ୍କ ଚୂଡ଼ିଅଡ଼େ ମଧ୍ୟ ଯେପରି ନିଆଁ ଜଳୁଛି !

ଅବଶେଷରେ ବିଜୟୀ ହୋଇଛି ବିଦ୍ରୋହୀ ମନ । ଉନ୍ମାଦିନୀ ପରି ଉଷା ଯାଇ ଶ୍ରୀକୃଷ୍ଣଙ୍କ ଛବି ତଳେ ମୁଣ୍ଡ ଲଗାଇ ପ୍ରାର୍ଥନା କଲେ—"ପ୍ରଭୁ, ସନ୍ତାନ ଲାଗି ମୁଁ ଘୋର ଅପରାଧ କରିବାକୁ ଯାଉଛି—ମତେ କ୍ଷମାକର; ନ ହେଲେ ଭୀଷଣଶାସ୍ତି ଦିଅ । ମୁଁ ସବୁ ସହିବାକୁ ପ୍ରସ୍ତୁତ ଅଛି, ଖାଲି ବାଧବାର ଏକମାତ୍ର ସମ୍ବଳ, ମୋର ପ୍ରଣୟ କୁ ଚିରସୁଖୀ କର—ପ୍ରଭୁ ।"

ଉଷାଙ୍କ ଆଖିରୁ ଧାର ଧାର ଲୁହ ବହିଯାଉଥିଲା । କିନ୍ତୁ ତାଙ୍କର ମନେହେଲା ଯେପରି ଏ ଲୁହ ନୁହେଁ, ତାଙ୍କ କଲିଜାର ରକ୍ତ ନିଗିଡ଼ି ପଡ଼ୁଛି ।।

ଉଷା ! ହଁ ସତରେ ସେ ପାଷାଣଠାରୁ ଅଧିକ ଅଧିକ କଠିନ ହୋଇଯାଇଛନ୍ତି । ଏ କେତେଦିନ ଭିତରେ ଦାନବହିଂସା ତାର ଲେଲିହାନ ଜିହ୍ୱା ଦେଖାଇ ତାଙ୍କୁ ଠେଲି ଦେଉଛି ଉମା ଓ ଅରବିନ୍ଦର ସର୍ବନାଶ ସାଧନ କରିବାକୁ ।

ପଦଦଳିତା ଫଣିନୀ ପରି ସେ ଫଣା ଟେକି, ଦଂଶନ କରିବା ସୁଯୋଗ ଖୋଜିବୁଲୁଛନ୍ତି । ଅରବିନ୍ଦ ଓ ଉମାଙ୍କର ମୂର୍ତ୍ତି କୁ ଆଡ଼େ ମିଳାଇ ଯାଇଛି, ଖାଲି ସମ୍ମୁଖରେ ରହିଛି ପ୍ରଣୟର କଠିନ ପାଂଶୁ-ମୂର୍ତ୍ତି ।

କୋମଳମନା ଉଷା ଆଜି ଯେପରି ଦାନବୀରେ ପରିଣତ ହୋଇ ଯାଇଛନ୍ତି ।

Digitized by srujanika@gmail.com

କନ୍ୟା ନିକଟରେ ନିଜକୁ ନିଆସାଟିଏ ସଂଯତ କରି ରଖିଛନ୍ତି, ସେ କାରଣ ସେ ଜାଣନ୍ତି, ପ୍ରକୃତି କେବେହେଲେ ଅରକ୍ଷିତର ଅମଙ୍ଗଳ ସାଧିତ ହେବାକୁ ଦେବନାହିଁ । ଆଉ ଛ'ଦିନ ମାତ୍ର ବାକି ଅଛି ଅରକ୍ଷିତ ରାଜା ହେବାକୁ—ଏ ଭିତରେ ଉପାୟ ଖୋଜି ବାହାର କରିବାକୁହିଁ ପଡ଼ିବ ।

ଦୁବେଳେ ଉଷା ଆସି କଥା ହୁଅନ୍ତି ଉମାଙ୍କ ସଙ୍ଗରେ । ଉମା, ଯେତେବେଳେ ଦୁଃଖିତମନରେ କହନ୍ତି, "ଉଷା— ତୋ ସୁନ୍ଦରଟିକୁ ମତେ ଛଡ଼ାଇ ଆଣିବାକୁ ପଡ଼ିଲା—କେଜାଣି କେତେ କଷ୍ଟ ହେଉଥିବ କି ତୋ ମନରେ ?"

କଥା କହି କହି ସରଳା ଉମାଙ୍କର ଆଖିଦୁଇଟି ଜଳରେ ପୂର୍ଣ୍ଣ ହୋଇଯାଏ । ଉଷାଙ୍କ ଶୁଷ୍କ ମୁହଁ ଦେଖି ସେ ବ୍ୟଥିତ ହୋଇଛନ୍ତି ।

କ୍ଷଣକପାଇଁ ଉଷା ବିଚଳିତ ହୋଇପଡନ୍ତି । ଅବଚେତନ କୋମଳମନ ଦାନବୀକୁ ଶାସନ କରି ଉଠେ । ସେ କହିପକାନ୍ତି, "କଣ ହେଲା ଉମା, ପ୍ରଣତି ଆଉ ଅରକ୍ଷିତ କଣ ଭିନ୍ନ ? ତାଙ୍କ ଭିତରୁ କିଏ ହେଲେ ସୁଖୀ ହେଲେ ହେଲା ?"

ଘରକୁ ଆସିଲାପରେ ଏଥିପାଇଁ ଅନୁତାପ କରିବାକୁ ପଡ଼େ ତାଙ୍କୁ । ଆଃ । ମେ ମଧ୍ୟ, ଦୁଇପଦ ଟାଣ ଟାଣ କଥା କହି ଦେଇଥାନ୍ତି !"

ଅରକ୍ଷିତ ଆଉ ପ୍ରାୟ ପ୍ରଣତି ପାଖକୁ ଯାଏ ନା । କାରଣ, ଉଷା ତାକୁ କହିଥାନ୍ତି, "ପ୍ରଣତି ସଙ୍ଗେ ବେଶୀ କଥାବାର୍ତ୍ତା ହେବାକୁ ଡାକ୍ତର ମନା କରିଛନ୍ତି !" ପ୍ରଣତିର ଅସୁସ୍ଥତା ପାଇଁ ଅରକ୍ଷିତ କମ୍ ଦୁଃଖିତ ହୋଇ ନ ଥିଲା । ଏତେବେଳକୁ ପ୍ରଣତିର ଦେହ ସୁସ୍ଥ ହେବାକୁ

Digitized by srujanika@gmail.com

ଥିଲା ? କ୍ଷଣକେ ସହିତ ଦୁଇ ପଦ ମନଖୋଲା କଥା ସେ କହିପାରୁନ ।”

ଉମା ମଧ୍ୟ ଥରେ ଦୁଇ ଥର ଦେଖି ଆସିଥିଲେ ପ୍ରଣତିକୁ ।

× × × ×

ଆଉ ତିନ ଦିନ ରହିଲା; ଅଥଚ ଉଷା କୌଣସି ଉପାୟ ଦେଖି-ପାରିଲେ ନାହିଁ । ତା ହେଲେ, ତାହେଲେ କଣ ପତି, ପୁତ୍ର, କନ୍ୟା ସହିତ ଉମା ତାଙ୍କ ଆଖିଆଗରେ ସୁରେଶକୁ ଜାମାତା ରୂପେ ବରଣ କରିବ ? ଗଙ୍କରେ ସେ ମୁଣ୍ଡ ଟେକି ଠିଆ ହେବ ପାଖରେ ଅପରୂପ ବୁଦ୍ଧିମାନ୍ ସୁରେଶ ଆଉ ରୂପସୀ ଅରତିକୁ ଧରି—ଆଉ ସେ ତାଙ୍କ ଅଭାଗିନୀ ପ୍ରଣତି ସହିତ ଭିଖାରୁଣୀ ପରି ଠିଆ ହୋଇ ତା’ ଦେଖିବେ ? ନା, ନା, ସେ ତା ସହି ପାରିବେ ନାହିଁ—କଦାପି ନୁହେଁ ! ଉପାୟ ! ଉପାୟ ! ଉପାୟ !—

ଉଷା ଉପାୟ ଖୋଜିବାକୁ ଲାଗିଲେ । ସେ ଦିନ ପ୍ରଣତିର ଶୀର୍ଣ୍ଣ ମୁହଁଟିକୁ ଚାହିଁ ତାଙ୍କୁ ଉପାୟ ମିଳିଗଲା । ଉପାୟ ମିଳିଲା · କିନ୍ତୁ ତା’କୁ କାର୍ଯ୍ୟରେ ପରିଣତ କରିବା ଯେ କି କଷ୍ଟକର ତାଙ୍କ ପକ୍ଷରେ, ତା ସେ ନିଜେ ଜାଣି ପାରିଲେ ।

ଶେଷରେ ସେ ମା ହୋଇ ସନ୍ତାନ ନାମରେ ମିଥ୍ୟା—ବ୍ୟଭିଚାର ଦୋଷ ଦେବେ ! ଓଃ ଭଗବାନ୍ ! କିନ୍ତୁ ତା ଛଡ଼ା ଯେ ଅନ୍ୟ ଉପାୟ ନାହିଁ ! ହଁ—ହଁ ! ସେ ସେହି ଉପାୟ ଅବଲମ୍ବନ କରିବେ । ପ୍ରଣତିର ଚେହେରା ଦେଖି ଉମା’ର କୌଣସି ସନ୍ଦେହ ରହିବ ନାହିଁ । କିନ୍ତୁ ଏତେ ବଡ଼ ନିଷ୍ଠୁର ମିଥ୍ୟାଟା ସେ କପରି ନିଜ ତୁଣ୍ଡ ଦେଇ ଉଚ୍ଚାରଣ କରିବେ ?

Digitized by srujanika@gmail.com

ନା—ନା ! କରିବାକୁ ହିଁ ପଡ଼ିବ—ପ୍ରଶାନ୍ତ ପାଇଁ । ପ୍ରଶାନ୍ତ ପାଇଁ ସେ ତାର ମିଥ୍ୟା ବ୍ୟଭିଚାରର କଥା ରଚନା କରିବେ । ଉମାଙ୍କ ଆଗରେ । ଉମାଙ୍କ ଆଗରେ ସେ ଯଦି ସ୍ଥିର ହୋଇ ଏତକ କହି-ଦିଅନ୍ତେ, ତା ହେଲେ ତାଙ୍କର କାର୍ଯ୍ୟ ସଫଳ ହୁଅନ୍ତା ! ସରଳା ଉମା ଯେ ବାହାରେ ଏହି କଥା ରଟନା କରି ନ ଦେଇ ଗୋପନରେ ସୁରେଶ-ସଙ୍ଗେ ପ୍ରଶାନ୍ତର ବାହା ଦେବେ, ଯାହା ସେ ନିଶ୍ଚିତ ରୂପେ ଜାଣନ୍ତି । ସେଥିପାଇଁ ହିଁ ସେ ଏହି ଦୁଃସାହସ କରିବେ୍ - ମା ହୋଇ ସନ୍ତାନ ନାମରେ ବ୍ୟଭିଚାର ଦୋଷ ଦେବାକୁ ! !

କିନ୍ତୁ—କିନ୍ତୁ ସେ କଥାଟା ଠିକ୍ ଉଚ୍ଚାରଣ କରି ପାରିବେ ତ !



Digitized by srujanika@gmail.com

## —ଦଶ—

ଉମା ବସି ଜନକ-ପକ୍ଷ ଫର୍ଦ୍ଦ ତିଆରି କରୁଥିଲେ । ଏ ସମୟରେ ଉଷା ଆସି ପହଞ୍ଚିଲେ । ତାଙ୍କର ଅଲୁଥାଲୁ ବେଶ-ଭୂଷା ଦେଖି ଉମା ବିସ୍ମିତ କଣ୍ଠରେ ପଚାରିଲେ, "ଉଷା—ତୋର କଣ ହୋଇଛି ?"

ଉମାଙ୍କ ମିଷ୍ଟସ୍ୱର "ଶୁଣି ଉଷା ପ୍ରାଣପଣ ଚେଷ୍ଟା କରି କହି ଉଠିଲେ ଆର୍ତ୍ତକଣ୍ଠରେ—ଉମା ! ଆ ଦେଖିବୁ ମୋର କି ସର୍ବନାଶ ହୋଇଯାଇଛି !"

ଉମା ଚମକି ଠିଆହୋଇ ପଡ଼ିଲେ ଯକ୍ଷଣି ଉଷା ତାଙ୍କ ହାତ ଧରି ଟାଣି ଟାଣି ନେଇଗଲେ ନିଜ ଘରକୁ ।

ଗୋଟିଏ କୋଠରୀ ଭିତରେ ଉମାଙ୍କୁ ବସାଇ ସେ କାନ୍ଦି କାନ୍ଦି କହିବାକୁ ଲାଗିଲେ, "ଉମା—ସୁରେଶ•••ମୋର ସର୍ବନାଶ କରିଛି—ମୋର ପ୍ରାଣର ପ୍ରଶାନ୍ତକୁ—" ଉମା ବ୍ୟାକୁଳ କଣ୍ଠରେ ପଚାରିଲେ—"କଣ ହେଲା—କଣହେଲା ପ୍ରଶାନ୍ତର ? ଉଷା, ସେ ଭଲ ଅଛି ତ ?"

ଉଷାଦେବୀ ଯେପରି କରୁଣ ଅଭିନୟ କରୁଥିଲେ, ତାଙ୍କ ଅନ୍ତର ମଧ୍ୟ ସେହିପରି ଦଗ୍ଧ ହୋଇ ଯାଉଥିଲା, ଏକଲା ପ୍ରାଣ-ସମା ସଙ୍ଗିନୀ ଉମାଙ୍କୁ ପ୍ରବଞ୍ଚନା କରିବାକୁ, କିନ୍ତୁ•••ପ୍ରବଞ୍ଚନା ଛଡ଼ା ଉପାୟ ଯେ ନାହିଁ—ସନ୍ତାନ ପାଇଁ ସେ ଜନନୀ ହୋଇ କଣ ଏତିକି କରିପାରିବେନି ?

ପୂର୍ବପରି ରୁଦ୍ଧ କଣ୍ଠରେ ସେ କହିଲେ, "ଭଲ ଭଲ ? ତାର ମରିବାଟା ହିଁ ବର୍ତ୍ତମାନ ମଙ୍ଗଳ ହେବ ମୋ ପକ୍ଷରେ—ସୁରେଶ ଏତେ

Digitized by srujanika@gmail.com

ହଲ ମଣିଷ ସେ ପୁଣି ଶେଷରେ—" ଉଚ୍ଛ୍ୱସିତ କ୍ରନ୍ଦନ-ବେଗରେ ସେ ଭାଙ୍ଗି ପଡ଼ିଲେ ।

କଥାଟା କଣ ବୁଝୁ ବୁଝୁ ପାଷାଣ-ପ୍ରତିମା ସମ ଉମା ଶୁଣିଲେ, ଯେ ସୁରେଶର ଭାବୀବଂଶଧର ପ୍ରଣତିର ଗର୍ଭରେ ! !

ସମ୍ମୁଖରେ ବଜ୍ର ପଡିଲେ ମଧ୍ୟ ଏହିପରି ଚମକିପଡ଼ି ନ ଥାନ୍ତେ ଉମା ! ମୂହୂର୍ତ୍ତିକ ଭିତରେ ତାଙ୍କର ହୃଦୟ-ଗଢ଼ା ଆଶାର ସୌଧ ଧୂଳି-ସାତ୍ ହୋଇଗଲା । ଅଭିଶପ୍ତ ! ଅଭିଶପ୍ତ ! ତାଙ୍କ ଅଭିଶପ୍ତର ଦଶା କଣ ହେବ ?

ସୁରେଶଙ୍କୁ ଅଭିଶାପ ଦେବାକୁ ଲାଗିଲେ ସେ । ଧୂମକେତୁ ପରି ସୁରେଶ ଉଦୟ ହୋଇ ତାଙ୍କରି ଅତିପ୍ରିୟ ବୁଇଟି ସଂସାରକୁ ଛାରଖାର କରିଦେଇଛି ।

କିଛିକ୍ଷଣପରେ ଅତି କଷ୍ଟରେ ସେ ପଚାରିଲେ, "ଉଷା, ଏୟା କିପରି ସମ୍ଭବ ହେଲା ତୁ ଥାଉ ଥାଉ ?"

ଉମାଙ୍କ ପ୍ରଶ୍ନ ଶୁଣି ଉଷା ନୀରବ ରହିଲେ ଘଡ଼ିଏ କାଳ ପାଇଁ । ଉମାଙ୍କ ବ୍ୟଥାପୂର୍ଣ୍ଣ ମୁହଁ ଦେଖି ତାଙ୍କର ଇଚ୍ଛା ହେଉଥିଲା, ଉମାଙ୍କୁ କହିଦଅନ୍ତେ, "ଉମା ଏ ସବୁ ମିଛ । ମିଛ ମୁଁ କହୁଛି—ଖାଲି ତୋର ଆନନ୍ଦ ସହି ନପାରି, ପ୍ରଣତିର ଦୁଃଖ ସହି ନ ପାରି—"

କିନ୍ତୁ ସତ କଥାଟା ସେ କହିପାରିଲେ ନାହିଁ । କିଏ ଯେପରି ତାଙ୍କ ଗଳା ଚିପି ଧରି କହିଲା—"କୂଳ ନିକଟରୁ ଆସି ନଉକା ବୁଡ଼ାଇ ଦେ ନା, ଆଉ ଦୁଇପାଦ···ଖାଲି ଦୁଇପାଦ ଆଗେଇ ଗଲେ କୂଳକୁ ଛୁଇଁଯିବୁ—"

ଚେଷ୍ଟା କରି ଉଷା ଉତ୍ତର ଦେଲେ ସ୍ଖଳିତ କଣ୍ଠରେ, "ଉମା, ମୁଁ ପ୍ରଣତିକି ସୁରେଶ ସଙ୍ଗେ ମିଶିବାକୁ ସୁଯୋଗ ଦେଉଥିଲି ସବୁବେଳେ,

Digitized by srujanika@gmail.com

କାରଣ ସୁରେଶଙ୍କୁ ଜୋଇଁ ରୂପେ ପାଇବ ବୋଲି ମୋର ସ୍ଥିର ବିଶ୍ୱାସ ଥିଲା । ଶେଷକୁ ସୁରେଶ ଯେ ପ୍ରଣତିର ସର୍ବନାଶ କରି ଅଡ଼େଇ ହୋଇଯାଇ ଆରତିକୁ ଭଲପାଇବ ତା ତ ଥରେ ହେଲେ ମୁଁ ଭାବି ନ ଥିଲି । ଓହୋ ! ଏବେ ମୁଁ କଣ କରିବି ? ଉମା—ତୁ ମତେ ବୁଦ୍ଧି ବତାଇ ଦେ—କଣ କରିବି ମୁଁ ? ଗୋଟେ ଅଡ଼େ ଆରତି, ଗୋଟେ ଅଡ଼େ ପ୍ରଣତି । କାହିଁକି ମୁଁ ସୁରେଶଙ୍କୁ ଘର ଭିତରକୁ ଆଣାଇଲି—''

ଉଷା କାନ୍ଦିବାକୁ ଲଗିଲେ । ପ୍ରିୟସଖୀର ମର୍ମନ୍ତୁଦ ବିଳାପ ସହି ନ ପାରି ଉମା କହିଲେ—"ଉଷା, ତୁ କିଛି ଭାବ ନା । ମୁଁ ପ୍ରଣତି ସଙ୍ଗେ ସୁରେଶର ବାହା ହେବ ।"

ଉଷା କହି ଉଠିଲେ—"ସୁରେଶ—ସେ କଣ ରାଜି ହେବ ? ଆଉ ଆରତି—ତା ଆରତିର ଗତି କଣ ହେବ ?

ଉମାଙ୍କ ହୃଦୟ ସେତେବେଳକୁ ଯେପରି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ୁଥିଲା । ବେଦନାର୍ତ୍ତ କଣ୍ଠରେ ସେ କହିଲେ; "ଉଷା ତା କପାଳରେ ଯାହା ଥିବ, ସେ ତା ଭୋଗିବ । ଭୋଗ ନ କରି ବା ଉପାୟ କଣ ଅଛି ? ଆରତିର ଦଶାଠାରୁ ପ୍ରଣତିର ଦଶାହିଁ ଯେ ଗୁରୁତର । ଆରତିର କଣ ହେଲେ ଗୋଟାଏ ବାଟ ଅଛି କିନ୍ତୁ ପ୍ରଣତିର ସବୁ ଆଡ଼ ଯେ ବନ୍ଦ । ପ୍ରଣତିର ଏ କଳଙ୍କ ପ୍ରକାଶ ହେବାକୁ ମୁଁ ଦେବି ନା—ହିଁ ସୁରେଶ ରାଜି ନ ହୋଇପାରେ କିନ୍ତୁ ସୁରେଶଙ୍କୁ ମଧ୍ୟ ମୁଁ ଜଣାଇବିନି ଯେ ସେ ଆରତି ପରିବର୍ତ୍ତେ ପ୍ରଣତିକୁ ହିଁ ବାହାହେବ । ।"

ପରକ୍ଷଣରେ ଉମା ମଧ୍ୟ ଉଚ୍ଛ୍ୱସିତ କ୍ରନ୍ଦନ ବେଗରେ ଭାଙ୍ଗି ପଡ଼ିଲେ । ଉଷା ଯେ ଗଦେଲେ ତାଙ୍କ ସହିତ ।

କିଛିକ୍ଷଣ ଉମା, ନିଜକୁ ଅଲ୍ପ ଶାନ୍ତ କରି କହିଲେ, "ଉଷା, ଯା,

Digitized by srujanika@gmail.com

ହେବା କଥା, ତା ହେଲାଣି ତୁ ବ୍ୟସ୍ତ ହୁଅନା—ଗୁଲେ, ପ୍ରଶାନ୍ତ କେଉଁଠି ଅଛି ? ତାକୁ ଅଳ୍ପ ଦେଖି ଆସିବ ।" କମ୍ପିତ ପଦରେ ସେ ଆଗେଇଗଲେ—ଉଷାଙ୍କ ସଙ୍ଗେ ।

×          ×          ×          ×

ପ୍ରଶାନ୍ତ ଶେଯ ଉପରେ ଶୋଇ ଗୁହୁଁ ଥିଲା, ନୀଳ ଆକାଶକୁ । ଆକାଶର ଶୂନ୍ୟତା ଠାରୁ ବଳିଯାଇଛି, ତା ଅନ୍ତରର ଶୂନ୍ୟତା । ଆଉ ଛନଦନ ରହିଲା, ଥରୁଥର ବାହାବାଧର ହେବାକୁ । ଦୁଇଧାର ଲୁହ ଗଡ଼ିପଡ଼ିଲା ତାର ଶୀର୍ଣ୍ଣ ଗାଲ ଉପରେ ।

ହଠାତ୍ ଉମାଙ୍କ ଆଗମନରେ ସେ ଚମକି ପଡ଼ିଲା । ପ୍ରଶାନ୍ତର ଶୀର୍ଣ୍ଣ-ବିବର୍ଣ୍ଣ ଚେହେରା ତା' ଆଖିରେ ଲୁହ ଦେଖି ଉମାଙ୍କର ସନ୍ଦେହ ରହିଲାନି । ହଠାତ୍ ପ୍ରଶାନ୍ତ ପାଖରେ ବସିପଡ଼ି ତା ପିଠି ଉପରେ ହାତ ବୁଲାଉ ବୁଲାଉ ଉମା କନ୍ଦନ ଜଡ଼ିତ କଣ୍ଠରେ କହିଲେ—

ପ୍ରଶାନ୍ତ, ମା ମୋର । ତୁ କିଛି ଚିନ୍ତା କରନା, ମୁଁ ସବୁ ଠିକ୍ କରିଦେବି !" ଉମାଙ୍କ ବ୍ୟବହାର ଓ ତାଙ୍କ କଥା ଶୁଣି ପ୍ରଶାନ୍ତ କିଛି ବୁଝି ନ ପାରି ବିସ୍ମୟ ବିସ୍ଫାରିତ ନୟନରେ ଗୁହିଁ ରହିଲା । ଉମା ତାକୁ ସାନ୍ତ୍ୱନା ଦେଇ ଉଠି ପଡ଼ିଲେ । ତାଙ୍କ ମୁଣ୍ଡ ଘୂରୁଥିଲା—ଦେହହାତ ସବୁ ଥରୁଥିଲା ।

ଉଷାଙ୍କ ସଙ୍ଗେ ବାହାରକୁ ଆସି କମ୍ପିତ କଣ୍ଠରେ ସେ କହିଲେ, "ଉଷା—ପ୍ରଶାନ୍ତର ସର୍ବନାଶ ହେବାକୁ ମୁଁ କେବେ ଦେବିନି । ତୁ ବ୍ୟସ୍ତ ହୁଅନା—"

Digitized by srujanika@gmail.com

ଉମା ଢଳି ଢଳି ନିଜ ଘରକୁ ଚାଲି ଆସିଲେ । ଆଜି ଉଷା—ତାଙ୍କର ଇଚ୍ଛା ସଫଳ ହୋଇଥିଲେ ମଧ୍ୟ ବିଷଧର ସର୍ପର ଦଂଶନ ଜ୍ୱାଳାରେ ମହିଷ ଯେପରି ଛଟପଟ ହୁଏ, ସେ ମଧ୍ୟ ଶେଯ ଉପରେ ଶୋଇ ଛଟପଟ ହେବାକୁ ଲାଗିଲେ ।

ପ୍ରଣବ ଏ ଘଟଣାର ବିନ୍ଦୁବିସର୍ଗ ଜାଣିପାରିଲା ନାହିଁ ।



Digitized by srujanika@gmail.com

## —ଏଗାର—

କଥାଟା କମେ ଉମା କହିଲେ ସ୍ୱାମୀଙ୍କୁ । ପ୍ରଥମେ ରମବାବୁ ବିଶ୍ୱାସ କରି ନ ପାରିଲେ ମଧ୍ୟ, ମା ଯେ ସନ୍ତାନ ନାଁରେ ମିଥ୍ୟା—ବ୍ୟକ୍ତିଙ୍କୁ ଦୋଷ ଦେବ, ସ୍ତ୍ରୀ ତାଙ୍କ ସମସ୍ତ ବିଶ୍ୱାସର ବାହାରେ ଥିଲା । ଅରଢିର ଉତ୍‌ଫୁଲ୍ଲ ମୁହଁ ଦେଖି ତାଙ୍କ ହୃଦୟ ଯେପରି ଫାଟି-ଗଲା । ଭଗବାନ୍ ଅରଢିର କପାଳରେ କଣ ଲେଖିଛନ୍ତି କେଜାଣି ? ପ୍ରଶାନ୍ତର ଦୁର୍ଦ୍ଦଶା ଦେଖି ତାଙ୍କ ହୃଦୟ ମଧ୍ୟ ବ୍ୟଥିତ ହେଲା ।

ସୁରେଶଙ୍କୁ ଯାଇ ପଚାରିବେ ବୋଲି ରମବାବୁ ବସିଥିଲେ, କିନ୍ତୁ ଉମା ବାରଣ କରି କଥାଟା ବୁଝାଇ ଦେଲେ ।

ଶେଷକୁ ସ୍ୱାମୀ ସ୍ତ୍ରୀ ଠିକ୍ କଲେ ସୁରେଶ ସଙ୍ଗେ ପ୍ରଶାନ୍ତର ବାହା ଦେଇଦେବେ । ତା ସଙ୍ଗେ ସଙ୍ଗେ ସ୍ତ୍ରୀ ମଧ୍ୟ ସ୍ଥିର କଲେ ଯେ, ବିବାହ ପୂର୍ବରୁ ସୁରେଶ ଯେପରି ସ୍ତ୍ରୀ'ର ବନ୍ଦୁବସର୍ଗ ସୁଦ୍ଧା ଜାଣିପାରିବନାହିଁ—ସେହି ରକମ ସବୁ ବ୍ୟବସ୍ଥା କରିବାକୁ ହେବ । କାରଣ ଯଦି କଥାଟା ଜଣା ପଡ଼ିଯାଏ ତେବେ ସୁରେଶ କାଳେ ଧରିକୁଆଁ ହେବନାହିଁ ।

କିନ୍ତୁ ଅରଢିକୁ କିପରି କଥାଟା ଜଣାହେବ, ସେଇଟା କଠିନ-ସମସ୍ୟା ରୂପେ ରହିଲା ତାଙ୍କ ସମ୍ମୁଖରେ । ଏ କଥାଟା କିପରି ଅରଢିକୁ ଦାରୁଣ ଅଘାତ ଦେବ, ତା ସେମାନେ ଭଲରୂପେ ଜାଣନ୍ତି ।

ଦୀର୍ଘନିଃଶ୍ୱାସ ପକାଇ ରମବାବୁ ପତ୍ନୀଙ୍କୁ କହିଲେ, "ଉମା, ଯା ହେବାର ହେବ, କହିଦିଅ କଥାଟା ଅରଢିକୁ । ଅଜି, ନ ହେଲେ କାଲି—ଏଇତକ ପ୍ରଭେଦ ସିନା ।"

× × × ×

Digitized by srujanika@gmail.com

ଓଃ ! ସ୍ୱାମୀ ଜନ୍ମର ଆଗମନରେ ଗୃହଦେବ ଯୋଗର ବସି ଉଠୁଛି ! ତାହାର ମରଣ ଲାଗିଛି ଆରତିର ଅନ୍ତରରେ । ସୁରେଶକୁ ଘେରି ଭବିଷ୍ୟତର ସୁମଧୁର କଳ୍ପନାରେ ସେ ବିଭୋର । କେତେ ଥର ସୁରେଶର ଛବି ସେ ଛାତି ଉପରେ ଚାପି ଧରିଛି । ସୁରେଶର ସଙ୍ଗ ପାଇବା ପାଇଁ ପ୍ରତିମୁହୂର୍ତ୍ତରେ ହୃଦୟ ତାର ବ୍ୟାକୁଳ ହୋଇ ଉଠୁଛି । ବାହାଘର ପାଖେଇ ଆସିଛି ବୋଲି, ଗୃହ ପାଠଦାନ ହେଲା ସୁରେଶ ଆସିନାହିଁ । ଆଜି ମାତ୍ର ଦୁଇ ଦିନ; କିନ୍ତୁ କି ଦୀର୍ଘ ମନେ ହେଉଛି-ଦିନ ଗୁଡ଼ାକ । ଏହି ସୁଦୀର୍ଘ ଦୁଇଟି ଦିନ ସେ କିପରି କଟାଇବ ? ବହି ପଢ଼ି-ବାକୁ ମନ ଲାଗୁନି, କାହାରି ସଙ୍ଗେ କଥାବାର୍ତ୍ତା ହେବାକୁ ଇଚ୍ଛା ହେଉନି । ଏପରି କି—ଡ୍ରେସରର ନିକଟକୁ ଯିବା ମଧ୍ୟ ଭଲ ଲାଗୁନାହିଁ । ଛିଃ ! ସେ କେତେଦିନ ହେଲା ଯାଇନାହିଁ—ମାଉସୀ ଆଉ ପ୍ରଶାନ୍ତ ଭଣି ଭାବୁଥିବେ ?

ସୁରେଶର ଛବିଟିକୁ ସେ ଓଲଟ ପାଲଟ କରି ଦେଖୁଥିଲା । ଛବିଟି ସେ ଲୁଚାଇ ନେଇ ଆସିଛି— ସୁରେଶର ଡାଏରୀ ଭିତରୁ ।

ଆରତି ଯେତେବେଳେ ସୁରେଶର ଚିନ୍ତାରେ ଭରପୂର ହୋଇ ବସିଥିଲା, ସେତେବେଳେ ଶ୍ଳଥ ପଦରେ ଉମା ଆସି ତା ନିକଟରେ ବସି ପଡ଼ିଲେ । ଆରତିର ପ୍ରିୟ-ଧ୍ୟାନ ଭାଙ୍ଗିଗଲା । କ୍ଷୁଣ୍ଣ ମନରେ ଲଜ୍ଜିତ କଣ୍ଠରେ ସେ କହିଲା —"ଖୁଡ଼ୀ—ମା କଣ ?"

ଆରତିର ଡାକ ଶୁଣି ଉମାଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା । ଆରତିର ପିଠିରେ ହାତ ବୁଲାଇ ବୁଲାଇ ସ୍ନେହର କଣ୍ଠରେ ସେ ସୁରେଶ—ପ୍ରଶାନ୍ତ ସହିତ ସବୁ ଘଟଣା କହିଗଲେ । ଆଉ ଆରତି ଅପଲକ ନେତ୍ରରେ ଖୁଡ଼ୀ—ମାଙ୍କ ଅଭିମୁଖରୁ ସବୁ ଶୁଣିଗଲା !

Digitized by srujanika@gmail.com

କିଛିକ୍ଷଣପରେ ଅରୁଣର ପଲକହୀନ ନେତ୍ର ଦେଖି ଉମା ଡରିଗଲେ । ବ୍ୟାକୁଳ କଣ୍ଠରେ ସେ ଡାକିଲେ, "ଅରୁଣ ! ମା ମୋର !"

ଅରୁଣର କ୍ଲାନ୍ତ ଅଧର ଦୁଇଟି ମୁହୂର୍ତ୍ତିକ ପାଇଁ ବିବର୍ଣ୍ଣ ହୋଇ କମ୍ପି ଉଠିଲା ମାତ୍ର । ପରକ୍ଷଣରେ ସେ ଉମାଙ୍କ କୋଳରେ ମୂର୍ଚ୍ଛିତା ହୋଇ ଢଳି ପଡ଼ିଲା । ଉମାଙ୍କ ଡାକ ହାକ ଶୁଣି ସୁଧବାବୁ ଆସି, ଅନେକ କଷ୍ଟରେ ପାଳିତା କନ୍ୟାର ମୂର୍ଚ୍ଛା ଭଙ୍ଗ କଲେ । ସମ୍ମୁଖରେ ବାପା ଅଜା ଯା'ଙ୍କୁ ଦେଖି ପ୍ରଥମେ ଅରୁଣ କିଛି ବୁଝି ପାରିଲାନାହିଁ । ତାପରେ ସବୁ କଥା ତାର ମନେ ପଡ଼ିଲା । ବକ୍ଷ ବିଦୀର୍ଣ୍ଣ କରି ଦୀର୍ଘନିଃଶ୍ୱାସ ଟିଏ ବାହାରି ଆସିଲା । କିଛିକ୍ଷଣ ସ୍ଥିର ରହି, ଧୀରେ ଧୀରେ ସେ କହିଲା, "ତେବେ, ଖୁଡ଼ୀ—ମା, ପ୍ରଣବ ସଙ୍ଗେ ତାଙ୍କ...ବାହା ଦେଇଦିଅ । ମୋର ଯାହା-ହେଉ କିଛି ହେଲେ ଉପାୟ ଅଛି...କିନ୍ତୁ ତାର...ତାର ତ ବାହା ଛଡ଼ା ଆଉକିଛି ଉପାୟ ନାହିଁ—ଖୁଡ଼ୀ ମା !"

ଅରୁଣର କଣ୍ଠସ୍ୱର ଖଣ୍ଡ ଖଣ୍ଡ ହୋଇଗଲା ଯେପରି । ଆଖିରୁ ଝର ଝର ହୋଇ ଲୁହ ଝରି ପଡ଼ିଲା । ଉମାଙ୍କ କୋଳରେ ମୁହଁ ଲୁଚାଇ ଦେଲା ସେ । ମନଶ୍ଚକ୍ଷୁରେ ଭାସି ଆସିଲା ଥରେ ସୁରେଶର ହାସ୍ୟୋଜ୍ଜ୍ୱଳ ମୁହଁ । କାହିଁ, ତା ଭିତରେ ପାପର ଚିହ୍ନ ମାତ୍ର ସେ ଦେଖିନାହିଁ । ଏ ଘଟଣା କଣ ସତ ? ସୁରେଶ ତାର ପ୍ରିୟତମ ! ସେ ଏପରି ପାପକାର୍ଯ୍ୟ କରିପାରନ୍ତି ! ଏପରି ପ୍ରବଞ୍ଚନା ତାକୁ କରିପାରନ୍ତି ! ନା, ନା । ଏ ସବୁ ମିଛ ! ଖୁଡ଼ୀ—ମା ମିଛ କହୁଛନ୍ତି—ସୁରେଶ ସେପରି ହୋଇ ପାରେ ନା ! ଓଃ !

ଅରୁଣ ଅଧୀର ଦୃଢ଼ଭାବରେ ଉମାଙ୍କୁ ଭିଡ଼ି ଧରିଲା ।

Digitized by srujanika@gmail.com

× × × ×

ଧୀରେ ଧୀରେ ସେହି ଦିନଟି ଆସି ଉପସ୍ଥିତ ହେଲା । ସୁରେଶ ଓ ଅରଢର ଆକାଂକ୍ଷିତ ଦିନ !

ଅରଢ ଯେପରି ମୂକ ପାଲଟି ଯାଇଛି । ପକ୍ଷାଘାତ ରୋଗୀଙ୍କ ପରି ତାର ସାରା ଅଙ୍ଗ ପ୍ରତ୍ୟଙ୍ଗ ଅବଶ !

ବସ୍ତ୍ର-ଅଭିଭୂତା କଙ୍କାଳସାର ପ୍ରଶଢରୁ ଏକ ପ୍ରକାର ଟାଣି ନେଇ ଆସିଛନ୍ତି ଉଷା । ସେ କିଛି ବୁଝିପାରୁନି—କଣ ହେଉଛି ଏ-ସବୁ ? ପ୍ରଶ୍ନ କରିବାକୁ ତିଳେ ମାତ୍ର ସାହାସ ହେଉନି ତାର !



Digitized by srujanika@gmail.com

## —ବାର—

ଆଶା-ଆନନ୍ଦ-ଭରା ହୃଦୟରେ ସୁରେଶ ନିର୍ଦ୍ଦିଷ୍ଟ ସମୟରେ ବର-ଯାତ୍ରୀଙ୍କ ମେଳରେ ବରବେଶ ସାଜି ଉପସ୍ଥିତ ହେଲା । ଆଜି ତାର ବହୁଦିନର ଇପ୍ସିତା ଅନ୍ତରର ମାନସ-ପ୍ରତିମାକୁ ଅତି ନିକଟରେ ପାଇବ ସେ । ହଠାତ୍ ତା ନଜର ପଡ଼ିଲା, ଗୋଟିଏ ଘରର ବାତାୟନ ଉପରେ, ଆରତି । ଆରତିର ବିବର୍ଣ୍ଣ ମ୍ଲାନ ମୁଖ ! ସୁରେଶ ସହିତ ଦୃଷ୍ଟିର ମିଳନ ହେଲାକ୍ଷଣି, ଆରତି ଅପସରି ଗଲା । ଆରତିର ପାଣ୍ଡୁର ମୁଖ ଦେଖି ସୁରେଶ ବ୍ୟଥିତ ହୋଇ ଭାବିଲା '...ଏତେ ଅନନ୍ଦ ଦିନରେ ଆରତିର, ମୁହଁ କାହିଁକି ଶୁଖି ଯାଇଛି ! ବୋଧହୁଏ ସାରାଦିନର ଉପବାସ ଦେଖୁ ।'

ହତଭାଗ୍ୟ ସୁରେଶ ଜାଣି ପାରିଲା ନାହିଁ, ତା ମସ୍ତକ ଉପରେ ବିଧାତା ଙ୍କ ଉଦ୍ୟତ ଖଡ୍ଗ ଝୁଲୁଛି । ସେ ହେତେବେଳେ ବୁଡ଼ି ରହିଛି ଆରତି ସହିତ ତାର ମିଳନ ଚିନ୍ତାରେ ! ଏଣେ ମୁହଁରେ ରାମବାବୁ ସାଦର ସମ୍ଭାଷଣ କରି ବରଣ କରିନେଲେ । ଯନ୍ତ୍ରଣା ଅଧୀର ହୃଦୟରେ ସେ ଭାବିଲେ "... ଏ ମଦ୍ଧି କାହାପାଇଁ ସେ କରୁଛନ୍ତି ?, କାହାପାଇଁ ?"

ରାମବାବୁଙ୍କ ପ୍ରତ୍ୟେକ ଘରେ ଜଳୁଛି ଆଲୁଅ; କେବଳ ଗୋଟିଏ ଘରକୁ ଛାଡ଼ି । ଅନ୍ଧକାର ପୂର୍ଣ୍ଣ ଛୋଟ କକ୍ଷଟି ଭିତରେ ଏକାକୀ ବସିଛି ଆରତି । ତା ମସ୍ତିଷ୍କ ଠିକ୍ ଅଛି ତ ? ଭୟ ହେଉଛି ତାର—କାଲି ସେ ହଇଗଲ ହୋଇଯିବ..." ଦେବ ଚରନ୍ଦ ସୁରେଶ ! ଶେଷକୁ ତୁମେ ଭାବି ସର୍ବନାଶ କଲ ? ନା, ନା ଯା ମିଛ, ଯା ଅସମ୍ଭବ ! ମନେ

Digitized by srujanika@gmail.com

ଯଉଁଠାରୁ ଘାର, ସେହି ଗୋଧୂଳି ସନ୍ଧ୍ୟା କଥା । ସୁରେଶର ବ୍ୟାକୁଳ କଣ୍ଠସ୍ୱର "ଅରୁଣ ! ଜାହିଁକି ମୋର ମନେ ହେଉଛି, ମୁଁ ତୁମକୁ ହାଇ, ହାରିବନି !"

ଅରୁଣ ଶିହରି ଉଠିଲା । ସୁରେଶର ସେ ଦିନର କଥା ଯେ ସତ୍ୟ ହେବାକୁ ଯାଉଛି ! ସଙ୍ଗେ ସଙ୍ଗେ ତାର ଦୃଷ୍ଟି ପଡ଼ିଲା, ହାତ ଅଙ୍ଗୁଠିରେ ଥିବା, ନୀଳ ପଥରର ମୁଦିଟି ଉପରେ । ଅନ୍ଧାର ଘର ଭିତରେ ମଧ୍ୟ ସେ ଯେପରି ସ୍ପଷ୍ଟ ଦେଖି ପାରିଲା ସେଇଟିକୁ । ସୁରେଶର ଅମୂଲ୍ୟ ପ୍ରେମର ଦାନ ! ନା, ନା ପ୍ରେମର ଦେବତା ଏତେ ନିଷ୍ଠୁର ହୋଇ ପାରେନା । ମିଛ—ସବୁ ମିଛ କଥା । ସୁରେଶ ନାଁ ରେ ମିଛ—ଅପବାଦ ଏମାନେ ରଟନା କରୁଛନ୍ତି । ପବିତ୍ର-ହୃଦୟ ସୁରେଶ ଯେ ତାର ସ୍ୱାମୀ, ତାର ଦେବତା, ତାର ପ୍ରେମିକ, ତାର ସବୁ !

ଧାର ଧାର ହୋଇ ଗଡ଼ି ପଡ଼ିଲା ତା ଆଖିରୁ ଲୁହ । ଆଜି ସେ ବରବେଶରେ ସଜ୍ଜିତ ସୁରେଶକୁ ଦେଖିଛି, କିନ୍ତୁ ସେଠାରେ ତ ବିନ୍ଦୁ-ମାତ୍ର ପାପର ଚିହ୍ନ ଦେଖିପାରିଲା ନାହିଁ । ନା—ନା ! ମାଉସୀ ମିଛ କହୁଛନ୍ତି···ସେ ଏବେ ଯିବ ସୁରେଶ ପାଖକୁ, ପଚାରି ବୁଝିବ ସବୁ କଥା ! ସୁରେଶର ମୁହଁରୁ ସେ ଉତ୍ତର ପାଇବାକୁ ଚାହେଁ···"

ଅରୁଣ ଉଠୁ ଉଠୁ ପୁଣି ବସି ପଡ଼ିଲା । "···କିନ୍ତୁ"···କିନ୍ତୁ ଯଦି ସତ ହୋଇଥାଏ, ତାହେଲେ—ସୁରେଶ ଜାଣିଲା ପରେ ଯଦି ମନା କରିବ ପ୍ରଣତିକୁ ବାହା ହେବାକୁ···"ପ୍ରଣତିର ଗତି କଣ ହେବ ତେଣିକି ?"

"···ନା ··ନା ସୁରେଶକୁ ସେ ଜଣାଇବ ନାହିଁ । ପ୍ରଣତି ! ତାର ସ୍ନେହର ଛୋଟକୁ ତାର ସୁଖ ପଥରେ ବାଧା ଦେବ !"

Digitized by srujanika@gmail.com

ଦୁଇହାତରେ ମୁଣ୍ଡ ଚାପି ଧରି ଅରୁଣ ବସି ରହିଲା, ଏକମାତ୍ର ଅଶ୍ରୁକୁ ସମ୍ବଳ କରି, ସେହି ନିର୍ଜନ ଅନ୍ଧକାର ଘର ଭିତରେ ।

ଉମାଙ୍କ ସ୍ଥାନରେ ଉଷା ନିଯୁକ୍ତ ହୋଇଛନ୍ତି । କମ୍ପିତପ୍ରାଣ, କମ୍ପିତ ଶରୀରରେ ଯନ୍ତ୍ରଚାଳିତ ପୁତ୍ତଳ ପରି ସେ ସବୁ କାମ କରି ଯାଉଛନ୍ତି । ଉମାଙ୍କ ପରିବର୍ତ୍ତରେ ଉଷାଙ୍କୁ ଦେଖି ସୁରେଶ ବିସ୍ମିତ ହେଲା ପ୍ରଥମରେ ; କିନ୍ତୁ ତାକୁ କୁହାଗଲା ଯେ, ଉମା ଅସୁସ୍ଥା ହୋଇପଡ଼ିଛନ୍ତି; ହଠାତ୍ ସେହିତୁ ଉଷା ତାଙ୍କ ଜାଗାରେ ରହି ସବୁ ଚଳାଇବେ । ମନେ ମନେ କ୍ଷୁବ୍ଧ ହେଲା ସୁରେଶ ସବୁଶୁଣି ।

ଆଉ ପ୍ରଶାନ୍ତ—ସେ ଯେପରି କାଠ ପାଲଟି ଯାଇଛି । କଣ ହେଉଛି ସେ କିଛି ବୁଝିପାରୁନି, ଆଜି ଆଉ ତା'ର ବାହାଘର—ନା ତା'ର ବାହାଘର ? ମାଙ୍କ ନିର୍ଦ୍ଦେଶ ଅନୁସାରେ ସେ କାର୍ଯ୍ୟ କରି ଯାଉଛି—ଆଉ ବାଧା ଦେବାକୁ ଶକ୍ତି ତା'ର ନାହିଁ, ଏଥିପରି କି ପଦେ କଥା ପଚାରିବାକୁ ମଧ୍ୟ । କିନ୍ତୁ—ସୁରେଶ ଏ କଥା ଜାଣିଛି ତ ? ଅରୁଣ । ଅରୁଣ—ସେ କୁଆଡ଼େ ଗଲା ?

ଉମା ହାତରେ ଓଠ ଚିପି ପ୍ରଶାନ୍ତର କନ୍ୟା-ସଜ୍ଜା ଦେଖିଲେ । ଯାହେଉ, ବିବାହ ଅନୁଷ୍ଠାନର କ୍ରିୟା ଆରମ୍ଭ ହୋଇଗଲା । ପୁରୋହିତ ମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲେ । ଆଉ ରାମବାବୁ କନ୍ୟାପିତା-ଙ୍କର ଯଥାବିଧି କାର୍ଯ୍ୟ କରିବାକୁ ଲାଗିଲେ ସଜଳ ନୟନରେ ।

କନ୍ୟା ଅତି ଧୀରେ ଧୀରେ ପହଞ୍ଚିଲା ବେଦୀ ନିକଟରେ । ସୁରେଶର ପ୍ରାଣ ପୁଲକି ଉଠୁଥାଏ । ନିଜକୁ ସେ ଯେପରି ଆଉ ସମ୍ଭାଳି ପାରୁନାହିଁ । ଅତି—ତା'ର ଅରୁଣିକା ଆଜି ସେ ପାଇବ—ସହଧର୍ମିଣୀ ରୂପେ । ଆଜି ଅରୁଣିକୁ ସେ ନିଜର ଅତି ଆପଣାର କରିନେବ !

Digitized by srujanika@gmail.com

ବେନାରସୀ ଶାଢ଼ୀରେ ଅବୃତା ପ୍ରଶେଢର ଦେହଟା ଯେପରି ଜୀବନ-ଶୂନ୍ୟ ହୋଇଯାଇଛି । ଜଡ଼ ପିଣ୍ଡୁଳା ପରି ସେ କୌଣସି ମତେ ବସିଛି । ସୁରେଶର ଗୌର ବର୍ଣ୍ଣ ସୁଦୃଢ଼ ହସ୍ତରେ ପ୍ରଶେଢର ଶୀର୍ଣ୍ଣ ଶ୍ୟାମଳ ହସ୍ତଟି ରଖି ପୁରୋହିତ ବାନ୍ଧିଦେଲେ କୁଶ-ଗୁଚ୍ଛ ଦ୍ୱାରା । ହାତ-ଗଣ୍ଠି ପଡ଼ିଗଲା ।

ହଠାତ୍ ସୁରେଶର ମନେହେଲା—"ଏ ତ ଅରେଢର ସ୍ପର୍ଶ ନୁହେଁ । ଠିକ୍ ସେ ଜାଣେ ଏ ସ୍ପର୍ଶ ଅରେଢର ପ୍ରାଣୋନ୍ମାଦକର ଉଷ୍ଣ ସ୍ପର୍ଶ ନୁହେଁ—ହୋଇପାରେ ନା ! ...ତେବେ କାହାର ? କାହାର ?"

ତାର ତପ୍ତ ହସ୍ତ ଭିତରେ ପ୍ରଶେଢର ହିମ-ଶୀତଳ ହାତଟି ଥରିବାକୁ ଲାଗିଲା ।

ଶୁଭଦୃଷ୍ଟି ! ସେ କଣ ? ଅରେଢର ଅନବଦ୍ୟସୁନ୍ଦର ମୁହଁଟି ପରିବର୍ତ୍ତରେ ପ୍ରଶେଢର କ୍ରନ୍ଦନଶୂନ୍ୟ ପାଂଶୁମୁଖଟିକୁ ଦେଖି ସୁରେଶର ବାକ୍ୟ ସ୍ଫୁରିଲାନାହିଁ । ନା—ନା ହୁଏତ ତାର ଭ୍ରମ ଏ । କିନ୍ତୁ ଅଉ-ଥରେ ସେ ଯାହା ଦେଖିଲା—ଭ୍ରମ ନୁହେଁ, ସତ୍ୟ—ଅତି ନିଷ୍ଠୁର ସତ୍ୟ !!

ରାମବାବୁଙ୍କୁ କଣ କହିବାକୁ ଯାଇ ସୁରେଶର ଦୃଷ୍ଟି ପଡ଼ିଲା, ସେହି ଅନ୍ଧକାର ଗୃହଟିର ବାତାୟନ ଉପରେ । ...ଏଇ ଯେ, ଏଇ ଯେ ତାର ପ୍ରାଣର ପ୍ରତିମା ଅରେଢ ! ବେଦୀ ନିକଟରେ ଜଳୁଥିବା ଗ୍ୟାସ୍ ଲାଇଟ୍‌ର ଆଲୁଅ ପଡ଼ିଛି ତା ମୁହଁରେ । ସେହି ସ୍ୱଳ୍ପ ଆଲୋକରେ ସୁରେଶ ଦେଖିପାରିଲା, ଅରେଢର ପ୍ରଜ୍ୱଳିତ ଚକ୍ଷୁର ଦୃଷ୍ଟି ! ଯେପରି ତା ଚକ୍ଷୁରୁ ଅଗ୍ନି ସ୍ଫୁଲିଙ୍ଗ ନିର୍ଗତ ହେଉଛି !

Digitized by srujanika@gmail.com

ଶୁଭଦୃଷ୍ଟି ମିଳନ ହେଲା । ଜଣଙ୍କର ନିର୍ବାକ ଦୃଷ୍ଟି, ଅନ୍ୟ ଜଣଙ୍କର ଉତ୍କୋଧାପ୍ତ ଦୃଷ୍ଟି । ସୁରେଶ ଅପଲକ ନେତ୍ରରେ ବାତାୟନ-ଅଭିଙ୍କୁ ଚାହିଁରହିଲ । ପୁରୋହିତଙ୍କର ଗୋଟିଏ ହେଲେ ମନ୍ତ୍ର-ଉଚ୍ଚାରଣ ଶବ୍ଦ ତା କାନରେ ପଶିଲାନାହିଁ । ତାର ଯେ ବାହାଘର ହେଉଛି, ତା ମଧ୍ୟ ସେ ଯେପରି ପାଶୋରି ପକାଇଲା ।

ଅନୁଷ୍ଠାନ ନିର୍ବିଘ୍ନରେ ସମାପ୍ତ ହେଲା । ସୁରେଶ ଓ ପ୍ରଣତିଙ୍କୁ ଉଠାଇ ଘର ଭିତରକୁ ନିଆଗଲା । ଯନ୍ତ୍ରଚାଳିତ ପରି ସୁରେଶ ସବୁ କରିଗଲା । କଣ ହେଲା, ଏବଂ କଣ ହେଉଛି, ଯା ଯେପରି ସେ ଭୁଲି-ଯାଉଛି । ଚିନ୍ତା-ଶକ୍ତି ରହିତ ଜଡ ପାଲଟିଯାଇଛି ସେ !

ଯଥା ସମୟରେ ଫୁଲ-ସଜ୍ଜା ଇତ୍ୟାଦି କାର୍ଯ୍ୟ ଶେଷ ହେଲା ।

X ✝ X

ଘର ଭିତରେ ସୁରେଶ ଓ ପ୍ରଣତି ବସିଛନ୍ତି । ଉଷାଦେବୀ ପ୍ରାକୃତିକ ଅନୁଷ୍ଠାନ ଗୁଡ଼ିକ ସାରିଦେଉଛନ୍ତି ଶିପ୍ରଗତିରେ । ଉମା କାନ୍ଥକୁ ଆଉଜି ଗୋଟିଏ କୋଣରେ ବସିଛନ୍ତି ନିର୍ବାକ୍ ହୋଇ ।

ଠିକ୍ ଏଇ ସମୟରେ ଅ-ତିଥି ଉନ୍ମାଦିନୀ-ବେଶରେ ଏ କକ୍ଷଟି ଭିତରେ ପ୍ରବେଶ କରିବା ଦେଖି, ଉପସ୍ଥିତ ଦେଖି ଗୃହଜନ ଲୋକ ସ୍ତବ୍ଧ ହୋଇଗଲେ । ସୁରେଶ ନିର୍ବାକ୍ ନୟନରେ ଚାହିଁ ରହିଲା—ଆରତିର ଦୌର୍ବଲ୍ୟ ଏ ଗୋଟିଏ ଦିନ ଭିତରେ ଯେପରି ଶତଗୁଣରେ ବଢ଼ି ଯାଇଛି । ଚକ୍ଷୁ ନିଷ୍ପ୍ରଭ,—ଅସ୍ଥି-ସାର ଅଙ୍ଗ ପ୍ରତ୍ୟଙ୍ଗ ଅସ୍ୱାଭାବିକ କଠିନ ଦେଖାଯାଉଥିଲା ।

ଅସ୍ଖଳିତ ପଦରେ ସେ ଆସିଲା ବର-କନ୍ୟାଙ୍କ ସମ୍ମୁଖକୁ । ତାପରେ ପ୍ରଣତି ଆଡ଼କୁ ଚାହିଁ ଉନ୍ମାଦିନୀ ପରି କହିଲା, "ପ୍ରଣତି—ମୋର ଅନ୍ତେଚ୍ଛା

Digitized by srujanika@gmail.com

ହେଲା, ଭଗବାନଙ୍କ ଦର୍ଶନରୁ ତୁମେ ଦୁଇଜଣ ବାଦ ହେବୁଣୀ ହୁଅ।"

ଓଡ଼ିଶା ଉଦ୍ଧାରରୁ ଅଚେତର ଦେବ ଦେଶ କରିନ ଅଦ୍ଭୁତଭାବ କଳାକାର ମୂର୍ତ୍ତି ଦେଖି ଲଜ୍ଜାରେ ଗ୍ଲାନିରେ ପ୍ରଦୀପର ମୁହଁଟା କଳା ହୋଇଗଲା। କଥା କେତୋଟି ଶୁଣି ତାର ମନେ ପଡ଼ିଗଲା ସେଦିନର କଥା, ଓଝିପିହିର ଭାଗ !

କଥାଟିକ କହିସାରି ଅସୀମ ଧୀରେଧୀରେ ପ୍ରଣାମ-ଭଳି ଛଳ ଶ୍ରୀକ ହୋଇ ଦେଲା ତା କୋଳ ଉପରେ—ଟାଉଟେ ପୂଜାର କହିଲା"— ପ୍ରସାଦ ! ଏଇଟା ଏମିତି ଦାମୀ ଜିନିଷ ଯେ ତୋତେ ଦେଉଛି —ମା ଘରର ଗୋଟିଏ ଅଂଶ।" କଥାଟା କହି ସାରି ଅଶ୍ରୁଳ ଦୃଷ୍ଟିରେ ସେ ଚାହିଁରହିଲା ପ୍ରଦୀପ ! ତାର ଭଙ୍ଗା କଣ୍ଠସ୍ୱର ଭିତରୁ ପ୍ରକାଶ ଶୁଣି ପାରିଲା ସେ କହୁଛି"—ବାଃ—ଦେଖିଲୁ-ମୁଁ କି ମେଳାର କଥା-ଭୁଆ କହୁଛି !"

ହଠାତ୍ ସେ ଚମକିଉଠିଲା ସୁରେଶ ଅଟ୍ଟ। ହାତରୁ ଟଙ୍କା ଦୁଇଟି କାଢ଼ି ସୁରେଶ ନିକଟକୁ ପୋଉଡ଼ି ଦେଲା ସେ। ବିକୃତ କଣ୍ଠରେ କହିଲା"— ମୋର ପ୍ରତିଦାନ—ବୁଝିଲେ, ମୋର ପ୍ରତିଦାନ ଏଇଟା !"

ମୁହଁ ଫେରାଇ ସେ ଦ୍ୱାର ଆଡ଼କୁ ଅଗ୍ରସର ହେଲା। ଆଃ ସେ କେତେ ! ଅତି ଅଳ୍ପ କିଛି ନାହିଁ ତାର—ସର୍ବସ୍ୱ ଦାନ କରି ଦେଇଛି ପ୍ରଦୀପ !

ଦ୍ୱାର ପାଖକୁ ଯାଇ ହଠାତ୍ ସେ ଚିତ୍କାର କରି ଉଠିଲା— "ଦେବୀ ମା—ମତେ ଟିକେ ଧର ; ମୋ ମୁଣ୍ଡ ବୁଲା ହୋଇଯାଉଛି..."

Digitized by srujanika@gmail.com

ଏପର୍ଯ୍ୟନ୍ତ ଉମା ପାଷାଣ ପରି ବସି ରହିଥିଲେ । ଅଦେଶର ଚିତ୍କାର ଶୁଣି ତାଙ୍କ ଚମକ ଭାଙ୍ଗିଲା । ତ୍ରସ୍ତ ପଦରେ ସେ ଦ୍ୱାର ନିକଟକୁ ଅଗେଇ ଆସି ସଙ୍କୁଚିତା ଅଦେଶଙ୍କ କୋଳରେ ଢଳି ବସି ପଡ଼ିଲେ ।



Digitized by srujanika@gmail.com

## —ତେର—

ନିସ୍ତବ୍ଧ ରାତି—ବୃକ୍ଷଅଙ୍କେ ଗୋଟିଏ ଚରମ-ଶାନ୍ତିର ଭାବ । ନର, ପଶୁ, ପକ୍ଷୀ—ସମସ୍ତଙ୍କର ବିଶ୍ରାମ ସମୟ । ରାମବାବୁଙ୍କ ଘରଟି ମଧ୍ୟ ସେହି ନିସ୍ତବ୍ଧତା ଭିତରେ ଠିଆ ହୋଇ ନିଦରେ ଢୁଳେଇ ପଡ଼ୁଛି ।

ରାମବାବୁଙ୍କ ପ୍ରଦତ୍ତ ଘେଟିରୁ ବାହାରି ଆସି, ସୁରେଶ ଅତି ସନ୍ତ-ର୍ପଣେ ଚାଳାଠେ ଘେରା ଉପର ଛାତକୁ ଉଠିଗଲା । ଛାତ ଉପରକୁ ଆସି ସର୍ବପ୍ରଥମେ ତା' ନଜର ପଡ଼ିଲା—ଅନିତା ଓ ସେ ଯେଉଁଠାରେ ବସୁଥିଲେ, ସେହି ସ୍ଥାନ ଉପରେ—

ହଠାତ୍ ଚମକି ପଡ଼ିଲା ସେ—ଧଳା ହୋଇ ଗୋଟିଏ କଣ ପଡ଼ିଥିବା ଦେଖୁଛି ସେହିଠାରେ । ନିଃଶବ୍ଦ ପଦକ୍ଷେପରେ ନିକଟକୁ ଆସି ସେ ଦେଖିଲା, ଅଲୁଳାୟିତ-କୁନ୍ତଳା ଅନିତା ମୁହଁ ମାଡ଼ି ଶୋଇଛି ! ଘନ ଅଳକ-ଗୁଚ୍ଛ ଚାରିଆଡ଼େ ଘୋଟି ହୋଇ ପଡ଼ିଛି ତାର ଦେହଅଙ୍ଗେ । ଶୁଭ୍ର ବସନା ଯୋଗୁଁ ତାର ସେଠିକା ଉପସ୍ଥିତି-ଟିକୁ ହେଉଛି ।

ସୁରେଶ ସେହିଠାରେ ବସିପଡ଼ି ଥରଥର ମୁଣ୍ଡ ଉପରେ ହାତ-ରଖି, ବେଦନାତୁର କଣ୍ଠରେ ଡାକିଲା—"ଅ—ନି—ତା ! !"

ସୁରେଶର ସ୍ୱର ନିସ୍ତବ୍ଧ ରାତି ଭେଦ୍ କରି ଶୂନ୍ୟ ପଥ ଅନେକ ଉଠେ ଦେଲା । ଉପରେ ନିର୍ମଳ ଆକାଶ ! ଆକାଶର ବକ୍ଷ ପୂର୍ଣ୍ଣ କରି ଉଦିତ ହୋଇଛନ୍ତି ପୂର୍ଣ୍ଣ-ଚନ୍ଦ୍ରମା—ତାଙ୍କର ଜ୍ୟୋତ୍ସ୍ନା ଯେପରି ପୃଥିବୀକୁ ସ୍ନାନ କରାଇଦେଉଛି । ଉଜ୍ଜ୍ୱଳ ନୀଳିମା ଭୂଷିତ ... ଖେଳୁଛି ... ।

Digitized by srujanika@gmail.com

ପଣ, ଘର, ସମସ୍ତ ପୃଥିବୀଟା ଯେପରି ତା ଚାରିଆଡ଼େ ବୁଲୁଛି । ତା' ଛାତି ଉପରେ କିଏ ଯେପରି ପଥର ଲଦିଦେଲା । ଓଃ ହୋ ! କି ଭୟାନକ ! କି ଭୀଷଣ ମିଥ୍ୟା !"

କଥା ଶେଷକରି ଅଜିତ ଅନ୍ଧାରରେ ଲୋଟିଦେଲେ ତଳେ, ବ୍ୟାଧ-ହତା ହରିଣୀ ପରି । ସୁରେଶ ନୀରବ !

ଚନ୍ଦ୍ରମା ଧୀରେ ଧୀରେ ଉଠିଆସୁଛନ୍ତି । ବନ୍ଦନୀୟଙ୍କ ଦେହକୁ ଛୁଇଁ ଯାଉଛନ୍ତି ଥରକୁ ଥର । ଅଜିତର ଅଞ୍ଜଳିଟା ପଞ୍ଜରର ଦୌର୍ବଲ୍ୟରେ ଥର ଥର ହୋଇ ଉଠୁଛି, ଚାହୁଁଛି ସୁରେଶର ମୁହଁରେ, ବକ୍ଷରେ—

ତା'ର ପରଶ ସୁରେଶକୁ ବାସ୍ତବ ଜଗତକୁ ଫେରାଇ ଆଣୁଛି ଯେପରି । ସୁରେଶ, ଭୁଲିଗଲା । ଆରକ୍ଷିତ ଗୃହିଣୀ । ହୃଦୟ ଯେପରି ଅଭିନୟ କରି କହିଉଠିଲା—'ପ୍ରଭୁ ! ମୋର ଜନ୍ମର ପାପ ହେତୁ ମୋର କଲ୍ୟାଣୀ ପୁଅକୁ ହରାଇ ବସିଲି ?"

ଓଃ ! ଏ ପ୍ରଶ୍ନର ଉତ୍ତର କିଏ ଦେବ ତାକୁ ?

ବାସ୍ପରୁଦ୍ଧ କଣ୍ଠରେ ସୁରେଶ ଅଜିତର ପିଠି ଉପରେ ହାତ ରଖି କହିଲା, "ଅଜିତ ! ସବୁ ମିଛ କଥା—ବାପ୍ପା ନଷ୍ଟର, ତୋ ଜୀବନ ମିଛ । ତୁମେ ମନେ ଏ ତ ଭଲକରି ଜାଣିଥିବ ଯେ ସେଥିପାଇଁ କହେ କହୁଥିଲା । ସେଇଟା ହେଲା ମୋର ସବୁଠୁ ବଡ଼ ଦୁଃଖ । ଅଜିତ—ପ୍ରଥମ ମୁଁ ସ୍ତ୍ରୀ ଭିତରକୁ ନେଇଥିଲି ସତ, କିନ୍ତୁ ସେ ଭଲ, ଯାହା ଅଜିତ କି ଯେପରି ଭଲପାଏ, ମୁଁ ସେହିପରି ତାକୁ ଭଲ ପାଉଥିଲି । ମୋର

Digitized by srujanika@gmail.com

ଯେଉଁଦିନର ମନେ ହେଉଛି, ମୁଁ ପ୍ରଣତି ଆଉ ମାଳବୀଙ୍କର ଷଡଯନ୍ତ୍ର ! ଶେଷରେ ତାଙ୍କ ଷଡଯନ୍ତ୍ର ହିଁ ସଫଳ ହେଲା—ପାପ ଅଭିସନ୍ଧି ସଫଳ ହେଲା । ଆମ ଦୁହିଁଙ୍କର ପବିତ୍ର ପ୍ରେମରେ ସେମାନେ ନିଆଁ ଲଗାଇ-ଦେଲେ—କି ନିଷ୍ଠୁର ଖେଳ ଖେଳିଲେ ସେମାନେ !"

ଦୁଇ ବିନ୍ଦୁ ତପ୍ତ ଅଶ୍ରୁ ପଡ଼ିଲା, ଆରତିର ବାହୁ ଉପରେ । ଆଉ ସନ୍ଦେହ ରହିଲାନି ତାର । ସୁରେଶ । ତା ପ୍ରାଣର ପ୍ରିୟତମଙ୍କୁ ସେ ହରାଇଲା ଚିରଦିନ ପାଇଁ ! ପ୍ରଣତି—ଆଉ ମାଳବୀ ଏତେ ପର ନୀଚମନା—ନିଷ୍ଠୁର ! କାହିଁକି ? କାହିଁକି ? ସେ ଏ କଥା ବିଶ୍ୱାସ କଲା ? କାହିଁକି ?

ସୁରେଶ କଠିନ କଣ୍ଠରେ କହିଉଠିଲା—"ଆରତି । ମୁଁ ପ୍ରତି-ଶୋଧ ନେବି ଏହି ଘୃଣ୍ୟ ଅନ୍ୟାୟର । ଏଇଥିପାଇଁ ଡାଲେଚଯୋଡ଼ ମାରିବି ସେ ଦୁହିଁଙ୍କୁ—ପ୍ରଣତି ମୋର ସ୍ତ୍ରୀ ନୁହେଁ—ନାଗୁଣୀ ଠାରୁ ଅଧିକ ଭୟଙ୍କର ଶତ୍ରୁ । ମୁଁ ନିଶ୍ଚୟ ପ୍ରତିଶୋଧ ନେବି । କିଛି-ହେବନାହିଁ, ଆରତି, ଆମ ମିଳନ ପଥରେ କେହି ବାଧା ଦେଇପାରି-ବେନି । ତୁମେ ମୋର ସ୍ତ୍ରୀ, ମୋର ପ୍ରେମିକା, ମୋର ସବୁ—ତୁମ ଲଜ୍ଜା ମୋର ଆଉ କିଛି ନାହିଁ । ମୁଁ ତୁମକୁ ବାହା ହେବି ।"

ସୁରେଶ ଆରତି ହାତ ଧରିଲା । ଉତ୍ତେଜନାରେ ତାର ହାତ ଥରୁଥିଲା । ଆରତି କିଛି ଉତ୍ତର ଦେଲାନାହିଁ; ଖାଲି କାନ୍ଦିବାକୁ ଲାଗିଲା ।

ଅନେକ ସମୟପରେ ନିଜକୁ ଅଳ୍ପ ଶାନ୍ତ କରି, ସେ ଧୀରେ ଧୀରେ ଉଠି ବସିଲା । ମରୁଭୂମି ପରି ତା ବକ୍ଷ ଖାଁ ଖାଁ କରୁଛି । ଓଃ । ସୁରେଶର ଦୁଇହାତ କୁ ଟାଣିଆଣି ସ୍ନେହଭରେ ନିଜ ହାତରେ ଧରି, ସେ ଗଭୀର କାଳ

Digitized by srujanika@gmail.com

ଯିବାଁ ହେଲା । ତାପରେ କହିଲା । ଅଶ୍ରୁଶର୍ମ—ଶାନ୍ତ ହୋଇଯାଇଛି ତା କଣ୍ଠସ୍ୱର ।

"ଛିଃ ଏତେ ଦୁଃଖ ନାହିଁ । ଯାହା ହେବାକୁ ଥିଲା ହୋଇଗଲା । ବିଧାତାଙ୍କ ଇଚ୍ଛା ବିରୁଦ୍ଧରେ କିଏ କାର୍ଯ୍ୟ କରି ପାରିବ ? ପ୍ରଶାନ୍ତ ଛଡ଼ା ଦୁନିଆରେ ମାଉସୀଙ୍କର କେହି ନାହିଁ । ସେମାନଙ୍କ ଅମଙ୍ଗଳ । ଏଥର ·· ଏଥର ତୁମେ ଚେଷ୍ଟା କର···ପ୍ରଶାନ୍ତ ଯେପରି ଅସୁଖୀ ନ ହୁଏ··· ସେ ହୁଏତ ତୁମକୁ ମୁଁ ଭଲପାଇବା ଆଗରୁ ଭଲ ପାଉଥିଲା·· ପ୍ରାଣଠାରୁ ଅଧିକ ଭଲ ପାଉଥିଲା···ସେ ହେତୁ ମୋ ସହିତ ତୁମର ମିଳନ ଘଟିବାକୁ ସେ ଦେଲା ନାହିଁ । ସେ ମତେ ପ୍ରତାରିତ କଲା ବୋଲି ମୁଁ କଣ ପ୍ରତିଶୋଧ ନେବି ? ନା, ଏବେ ମଧ୍ୟ ମୁଁ ତାକୁ ସ୍ନେହ କରେ । ତୁମେ ଆଉ ମୋ କଥା ଭାବନାହିଁ···ଆଜିଠାରୁ ପ୍ରଶାନ୍ତ ହିଁ ତୁମର ସବୁ ।"

ଦୁଇଟୋପା ଲୁହ ସୁରେଶର ହାତ ଉପରେ ପଡ଼ିଲା ।

"ଆରତି, ଏ ଅନୁରୋଧ କରନାହିଁ ମତେ, ମୁଁ ରଖି ପାରିବିନି । ମୁଁ ପ୍ରଶାନ୍ତକୁ ପାଇବାର ବହୁତ ଆଗରୁ, ତୁମକୁ ହୃଦୟ ଦେଇ ଦେଇଛି । ମୋ ହୃଦୟ ତ ଆଉ ମୋର ନୁହେଁ । ପ୍ରଶାନ୍ତ କେବେହେଲେ ମୋ ହୃଦୟ ସ୍ପର୍ଶ କରିପାରିବ ନାହିଁ ।"

"···ଛିଃ ଏପରି କହନାହିଁ । ପ୍ରଶାନ୍ତ କୁ ତୁମେ ଚିହ୍ନିନ । ତାକୁ ଯଦି ତମେ କଷ୍ଟ ଦିଅ, ତାହେଲେ ତାଠାରୁ ବେଶୀ କଷ୍ଟ ମୁଁ ପାଇବି ।" ମତେ ପାଇବା ଅଶା ଆଉ ରଖନାହିଁ—ଆମ ଦୁଇଜଣଙ୍କର ଆଉଥରେ ବାନ୍ଧିହେବା ଅସମ୍ଭବ । ପ୍ରଶାନ୍ତର ହୃଦୟକୁ ମୁଁ ହତ୍ୟା କରିପାରିବି

Digitized by srujanika@gmail.com

ନାହିଁ—ମୋ ନଜର ଲୁଚିଯିବା ପରେ ଆଉ ହୋଇଗଲେ ମଧ—ଶୁଣ ।" ଅରତି ତାର ସ୍ଥିର ଦୃଷ୍ଟି ସ୍ଥାପନ କଲା ସୁରେଶର ମୁହଁ ଉପରେ"—ତୁମେ ମୋ ଦେହକୁ ତୁମ ଅଙ୍କଶାୟୀ କର, ଯଦି ଚାହଁ ସ୍ତ୍ରୀ ରୂପେ ଗ୍ରହଣ କରିବ ବୋଲି—"

ଓଷ୍ଠାଧରର ଚୌମ୍ବନରେ ମଣ୍ଡିତ ହେବାକୁ ଚାହେଁ ଅରତି ? ପ୍ରଣୟ ପାଇଁ ତାର ସବୁ କିଛି ତ୍ୟାଗ କରିଦେବାକୁ ଏତେ ଟିକେ କୁଣ୍ଠିତ ହେଉନାହିଁ ସେ ? କି ଆଶ୍ଚର୍ଯ୍ୟ—ଆରତି କଣ ସତକୁ ସତ ଏ ଅନୁରୋଧ କରୁଛି ତାକୁ ? ପ୍ରଣୟ ଲାଗି ଏତେବଡ଼ ଦୁର୍ଘଟଣା ଘଟିଯିବା ପରେ ମଧ୍ୟ ଟିକିଏ ହେଲେ ଘୃଣା କରୁନି ପ୍ରକୃତିକୁ ?

ସୁରେଶ ଆଶ୍ଚର୍ଯ୍ୟ ହେଲା ଆଉ କ୍ଷୁବ୍ଧ ହେଲା ମଧ୍ୟ । "ଅରତି, ତୁମକୁ ନ ପାଇଲେ ଯେ ମୁଁ ବଞ୍ଚି ପାରିବନି—ତୁମେ ତାହାଙ୍କ ବାଞ୍ଛାକୁ ଅସମ୍ଭବ ବୋଲି କହୁଛ—ଆରତି, ତୁମେ କଣ ମତେ ଭଲପାଅନି—?"

ମୁହୂର୍ତ୍ତିକ ପୂର୍ବେ ତା'ର ସମସ୍ତ ବାସନା କାମନାର ବାଞ୍ଛିତ ସୁରେଶକୁ ସାମାନ୍ୟ ଟିକିଏ ଭୁଲ୍ ପାଇଁ ହରାଇବାରୁ ଯେଉଁ ହତାଶ ଅନୁତାପ ଘୋଟି ଆସି ତା' ହୃଦୟକୁ ଦଗ୍ଧ କରି ଦେଉଥିଲା । ଉଠାଙ୍କ ଉପରେ, ପ୍ରଣୟ ଉପରେ ଗଭୀର ଘୃଣା ଜାତ ହୋଇଥିଲା ତା' ମନରେ—ଟୋକିଏ ମୁହୂର୍ତ୍ତି ପାଇଁ ତା' ମନ-ର ଯୁଆଁ ମଧ୍ୟ ଜାଗି ଉଠିଥିଲା ଯେ ସୁରେଶକୁ ସ୍ୱାମୀରୂପେ ବରଣ କରି ସେ ନିଜର ଗର-ଳାର ନଷ୍ଟ କରିଦେବ ପ୍ରଣୟ ଆଉ ଉଠାଙ୍କୁ—ଏ ଅନ୍ୟାୟର ତୀକ୍ଷ୍ଣ ପ୍ରତିଶୋଧ ନେବ—କିନ୍ତୁ ସୁରେଶ ଯେତେବେଳେ ପ୍ରତିଶୋଧ ନେବା କଥା କହିଲା ହଠାତ୍ ଦୁର୍ବୃତ୍ତଙ୍କ ଆହତ ହେବାକୁ ଖାଇଲା ପରି ମୁହୂର୍ତ୍ତିକ ପରେ ତା'ର ହେଙ୍ଗ ଅସ୍ପଷ୍ଟ ହୋଇଯାଉଥିଲା । ସୁରେଶର

Digitized by srujanika@gmail.com

ହିଂସ୍ର ଜନ୍ତୁଙ୍କ ମଧ୍ୟରେ ସେ ଯେପରି ନିଜର ହିଂସ୍ର ମନୋବୃତ୍ତିର କୁତ୍ସିତ ବୀଭତ୍ସ ସ୍ୱରୂପର ପ୍ରତିବିମ୍ବ ଦେଖିପାରିଲା । ପରକ୍ଷଣରେ ଏକ ଅଦ୍‌ଭୁତ ମହତ୍‌ ଶକ୍ତି ଯେପରି ତାକୁ ମନ୍ତ୍ରମୁଗ୍ଧ କରିପକାଇଲା । ତ୍ୟାଗର ମହିମାରେ ମଣ୍ଡିତ ହେବାର ସେହି ପ୍ରବଳ ଇଚ୍ଛା ତାଙ୍କୁ ଘୋଟିଗଲା । ନିଜର ଏହି ଆକସ୍ମିକ ଅଦ୍‌ଭୁତ ପରିବର୍ତ୍ତନ ଜାଣି ସୁଦ୍ଧା, ଜାଣି ପାରିଲା ନାହିଁ ସେ । ପ୍ରଣତି ପାଇଁ-ସୁରେଶ ପାଇଁ ନିଜର ଚିରବାଞ୍ଛିତ ଆଶାକୁ ବଳି ଦେଇ ଦେବାକୁ ତା'ର ସାରା ମନ ଲାଳାୟିତ ହୋଇଉଠିଲା ।'

ସେଥିପାଇଁ ବିଚଳିତ ହୋଇପଡ଼ିଥିଲେ ମଧ୍ୟ, ସେ ଆଶ୍ଚର୍ଯ୍ୟ ଦୃଢ଼ତା ସଙ୍ଗେ ନିଜକୁ ସଂଯତ କରିନେଇ, ମ୍ଳାନମଧୁର କଣ୍ଠସ୍ୱରରେ ଜୋର୍ ଦେଇ ସେ କହିଲା, "—ଭଲପାଏ । ଆଉ ସେଇଥିପାଇଁ ତ ମୋ ଦେହକୁଇଁ ପ୍ରତିଜ୍ଞା କର ବୋଲି କହୁଛ । ମୁଁ ବର୍ତ୍ତମାନ୍ କଣ ତୁମେ ଜାଣ ?" ଟିକିଏ ରହିଗଲା ସେ...ପର କ୍ଷଣରେ ଯେପରି ସମସ୍ତ ଦୁର୍ବଳତାକୁ ଦେହରୁ ଝାଡ଼ି ପକାଇ କହିଲା—"ମୁଁ ତୁମେ ମୋର ଭଲ-ପାଇବା ନିର୍ମଳ, ନିଷ୍କାମ, ପବିତ୍ର ରହୁ । ମୋ ପ୍ରତି ତୁମର ପ୍ରେମଟା, ମୋ ଆଖି ଆଗରେ ମୋର ଆଦର୍ଶ ହୋଇ ରହୁ । ସେହି ଆଦର୍ଶକୁ ଅନୁସରଣ କରି, ମୁଁ ଯେପରି ମୋ ବାଟରେ ଆଗେଇ ଯାଏ ।"

ସୁରେଶ ନିର୍ବାକ୍ ହୋଇଯାଇଥିଲା । ଅନ୍ତରର ସେହି ସ୍ୱର୍ଗୀୟ ମୂର୍ତ୍ତିକୁ ଦେଖି ସେ ଯେପରି କଥା କହିବାର ସମସ୍ତ ଶକ୍ତି ହରାଇ ଦେଇଛି ।

ଅନେକ କ୍ଷଣ ପରେ ସେ କେବଳ ଏତିକି କହିବାକୁ ସମର୍ଥ ହେଲା, "ଆରତି, ତୁମେ ସତେ ସତେ ସ୍ୱର୍ଗର ଦେବୀ ଦେଖା ଯାଉଛ ।"

Digitized by srujanika@gmail.com

ସେତେବେଳେ ମଧ୍ୟ ସୁରେଶର ହାତ ଦୁଇଟି ଅରତିର ଚନ୍ଦ୍ରମା ଭିତରେ ଥିଲା । ଅରତି କିଛି ଉତ୍ତର ଦେଲା ନାହିଁ । ଉତ୍ତର ଦେବାକୁ ଆଉ କିଛି ବାକି ନଥିଲା ମଧ୍ୟ ତା ପାଖରେ ।

ଅନେକ ସମୟ ପରେ ସୁରେଶ ଆଉ ଥରେ କଥା ଆରମ୍ଭ କଲା । ତା'ର କଣ୍ଠ ସ୍ୱରରେ ଯେପରି ଜୀବନର ସାମାନ୍ୟ ସ୍ପନ୍ଦନ ମାତ୍ର ନାହିଁ । କହିଲା ସେ—"ଅରତି, ଆଉ ତୁମ ପାଖରେ ଉତ୍ତର ଦେବାକୁ କିଛି ନାହିଁ, ନା ? ତୁମର ନିର୍ଦ୍ଦିଷ୍ଟ ମତ ତୁମେ ଜଣାଇ ସାରିଛ !

ହଉ । ଆଜି ଗୋଟିଏ କଥା ଶୁଣ । ମୋର ପ୍ରାଣର ନିବେଦନ-ଟାକୁ କାହିଁକି ଫେରାଇଦେଲ ? କିନ୍ତୁ ମୁଁ ତ ଆଉ ଆଜି ସେଇଟା ଫେରାଇ ନେଇ ପାରେ ନା "କାରଣ ମୁଁ ଆଜି ସେ ସୁରେଶ ନୁହେଁ । ତୁମ ସୁରେଶ ମରିଯାଇଛି । ତୁମ ପ୍ରେମିକ ସୁରେଶର ମୁଁ କେବଳ ଅବାସ୍ତବ ଛାୟା ମାତ୍ର !"

ସୁରେଶର କଣ୍ଠସ୍ୱରରୁ ଯେପରି ଶତଧାରାରେ ବେଦନା ଝରି ପଡ଼ୁଥିଲା ।

ତା'ର ମର୍ମସ୍ପର୍ଶୀ ବ୍ୟଥାତୁର ଗାଢ଼ କଣ୍ଠସ୍ୱରରେ ଅଭିଭୂତା ଅରତି ଦୁଇ ହାତ ଅଞ୍ଜଳି ବନ୍ଧ କରି କହିଲା, "ଦେଇଦିଅ । ମୁଁ ଜାଣେ କେବେ ଫେରାଇ ଥାନ୍ତି ? ଆଜି ବଡ଼ ଆଘାତ···"

"ଥାଉ"—ବାଧା ଦେଇ ସୁରେଶ କହିଲା, "ଥାଉ, ସେ କଥା । ନିଅ, ଅରତି, ତୁମ ଜିନିଷ ।"

ଥରେ ଗୋଧୂଳି ସନ୍ଧ୍ୟାରେ ପ୍ରେମୋନ୍ମାଦ ହୃଦୟରେ ଏହି ହାତରେ ହିଁ ସୁରେଶ ଅରତିର ଅଙ୍ଗୁଳିରେ ପିନ୍ଧାଇ ଦେଇଥିଲା ଅଙ୍ଗୁରୀୟ—ସେଇଟା ପ୍ରଥମ । ଆଜି ଜ୍ୟୋତ୍ସ୍ନା-ପ୍ଲାବିତ ରଜନୀରେ

Digitized by srujanika@gmail.com

ସେହି ସ୍ଥାନରେ ହିଁ ଦ୍ୱିତୀୟଥର ପାଇଁ ପିନ୍ଧାଇଦେଲେ ନୀଳାଙ୍ଗୁରୀୟଟି ଆରତିର ଅଙ୍ଗୁଳିରେ, କିନ୍ତୁ ଶୂନ୍ୟ ହୃଦୟରେ । ସେ ଦିନ ସେ ଦାନ-ଟିର ମଧ୍ୟ ନିଃସ୍ୱ ହୋଇ ନ ଥିଲା । ଆଜି ଯେପରି ସବୁ ତା'ର ନିଃଶେଷ-ହୋଇଗଲା ।

ପରେ ଅଙ୍ଗୁରୀୟଟିକୁ ନିରୀକ୍ଷଣ କରି ଆରତି ପ୍ରଥମ ଓ ଶେଷ-ଥର ପାଇଁ ସୁରେଶର ପାଦତଳେ ପ୍ରଣାମ କଲା । ଅଭିଭୂତ ସୁରେଶର ବାକ୍ୟ ସ୍ଫୁରିଲା ନାହିଁ ।

ଆରତି ଉଠିପଡ଼ି ଯାଉ ଯାଉ କହିଲା—ଆଶାକରେ, ଆଉ ଏଥର ମୋ ସଙ୍ଗେ ସମ୍ବନ୍ଧ ରଖିବ ନାହିଁ । ସେଥିପାଇଁ ଯଥାସାଧ୍ୟ ଚେଷ୍ଟା କରିବ । ଆଜି ପ୍ରଣତିକୁ—"

ସୁରେଶର କ୍ଷଣ ଗୋଟିଏ କଥା ମନେ ପଡ଼ିଗଲା । ବାଧା ଦେଇ ସେ କହିଲା, "ଆରତି, ଶୁଣ, ଆମ ଦୁହିଁଙ୍କର ପ୍ରେମର ମୃତ୍ୟୁ ଓ ସମାଧି ତ ହୋଇଗଲା ଏଠାରେ । ତୁମେ ମୋର ଗୋଟିଏ ଅନୁରୋଧ ରକ୍ଷା କର । ତୁମ ଜୀବନଟାକୁ ନଷ୍ଟ କରନାହିଁ । ସୁରେଶକୁ ଭୁଲି ସଂସାରକୁ ବରଣ କର—"

ଏତେ କ୍ଷଣ ପରେ କଳାମେଘ ବକ୍ଷରେ ବିଜୁଳି ଖେଳିଗଲା ପରି ଗୋଟିଏ କ୍ଷୀଣ ହାସ୍ୟରେଖା ଆରତିର ବିବର୍ଣ୍ଣ ଅଧର ଉପରେ ଖେଳି-ଗଲା । ପରକ୍ଷଣରେ ସେ ଦ୍ରୁତ ପଦରେ ଓହ୍ଲାଇଗଲା ତଳକୁ ।

ତା'ର ସେଇ ହସରୁ ଉତ୍ତର ପାଇଗଲା ସୁରେଶ ।



Digitized by srujanika@gmail.com

# — ଚୌଦ —

ଯେଉଁ ଦିନ ନବବଧୂ ପ୍ରଣତିକୁ ସଙ୍ଗରେ ଧରି ସୁରେଶ ଶିଳ୍ପା ଘରକୁ ଫେରିଲା । ଏହି ଅପ୍ରତ୍ୟାଶିତ ଘଟଣାଟିକୁ ଦେଖି, ରେଖା ସ୍ତମ୍ଭିତ ହୋଇଯାଇଥିଲେ କିନ୍ତୁ ସୁରେଶର ଶବଣ୍ଡ କଠିନ ମୂର୍ତ୍ତି ଦେଖି ସେ ଏ ବିଷୟରେ ଉଚ୍ଚବାଚ୍ୟ କରିବାକୁ ସାହାସ କଲେନାହିଁ । ଘଟଣାଟାକୁ ଏକ ଭୀଷଣ ଦୁର୍ଭାଗ୍ୟ ବୋଲି ମାନିନେଲେ ସେ ।

ପ୍ରଣତି ଯାହା ଚାହିଁଥିଲା, ଚାହୁଁଥିଲା, ତାହା ସେ ପାଇଲାନାହିଁ । ପ୍ରଣତି ଚାହୁଁଥିଲା ଅନ୍ତର ସହିତ ପ୍ରେମ, ସେ ଚାହୁଁଥିଲା ସୁରେଶର ହୃଦୟ, କିନ୍ତୁ ପାଇଲାନାହିଁ । ସେ ଦେଖିଲା, ସୁରେଶର ହୃଦୟ ତା 'ଧରିବା-ଛୁଇଁବା'ର ବାହାରେ । ସ୍ୱାମୀଙ୍କ ଅନ୍ତରଠାରୁ ବହୁତ ଦୂରରେ ସେ ଅଛି ।

କର୍ତ୍ତବ୍ୟ ଦୃଷ୍ଟିରୁ ଅବଶ୍ୟ ସୁରେଶ ଅବହେଳା କରେନାହିଁ । ଆରତି ପାଖରେ କରିଥିବା ପ୍ରତିଜ୍ଞା ପାଳନ କରିବାକୁ ସେ ଚେଷ୍ଟା କରେ । ଅଭାଗିନୀ ପ୍ରଣତି ଅଭିମାନ କରିପାରେ ନାହିଁ, ସ୍ୱାମୀଙ୍କୁ କିଛି କହିପାରେନା ମଧ୍ୟ । ଯଥାସାଧ୍ୟ ଚେଷ୍ଟାକରି ନିଜକୁ ସେ ସ୍ୱାମୀଙ୍କ ଠାରୁ ଦୂରରେ ଦୂରରେ ରଖେ । ସୁରେଶର ମ୍ଳାନ ମୁହଁ ଦେଖି ବକ୍ଷ ଫାଟି-ଯାଉଥାଏ ତାର ।

ମନେପଡେ—ଆସିଲାଦିନ ମା ଯେତେବେଳେ କାନ୍ଦି, କାନ୍ଦି ହାତ ଦ ହାତର ଉପରି ହେଲା କହିଲେ, ସବୁଶୁଣି ସେ ହସିଲା ଖୁ

Digitized by srujanika@gmail.com

ଜାଣିବ ଭାବିପାରିନଥିଲା । ତେବେ ସୁରେଶର ଅଜାଣତରେ, ଅରୁଣାକୁ ପ୍ରାର୍ଥନା କରି ଏ ସବୁ ତାର ହୋଇଛି ? ଧିକ୍କାରରେ ତା ମନ ପୂରିଯାଉଥିଲା । ନିଜପ୍ରତି ଘୃଣା ଜାତ ହୋଇଥିଲା ତାର । ଛି, ଛିଃ, ଅରୁଣ କଣ ଭାବି ନ ଥିବ ! କେତେ କଷ୍ଟ ପାଇ ନ ଥିବ, ଯେତେବେ-ବେଳେ ଶୁଣିଥିବ, ସୁରେଶର ସ୍ତ୍ରୀ ବଂଶଧରକୁ ତା ପ୍ରାପ୍ତି ବନ୍ଦନା କରିଛି !

ମା ! ସେ କିପରି ନିଜ ସନ୍ତାନ ନାଁ ରେ ମିଥ୍ୟା-ବଂଶଗୁର ରଚନା କରିପାରିଲେ ? ପ୍ରଣତି ମାଙ୍କୁ ଦୋଷ ଦେଇ ପାରେ ନା । ସବୁ ଦୋଷ ତାର— ସେ ଯଦି ନିଜକୁ ସଂଯତ କରି ଅନ୍ୟକୁ ବାଧା ଦେବାକୁ ସକ୍ଷମ ହୋଇଥାନ୍ତା, ତା'ହେଲେ ସୁରେଶ ଓ ଅରୁଣ ଏହିରୂପେ ଅନ୍ତ-ରର ଦାହରେ ଜଳିପୋଡ଼ି ମରୁ ନ ଥାନ୍ତେ—ସେ ନିଜେ ମଧ୍ୟ । ଅରୁଣ କିପରି ଏ ଆଘାତ ସହିବ ?

ପ୍ରଣତି ନିଜ ବେଦନାରେ ନିଜେ ଛଟପଟ ହେବାକୁ ଲାଗିଲା । ସ୍ୱାମୀ ପାଇ ମଧ୍ୟ ସେ ସ୍ୱାମୀ ପାଇନାହିଁ—ଯାହାଠାରୁ ବଳି ଦୁର୍ଭାଗ୍ୟ ଆଉ କଣ ହୋଇପାରେ ? କାହିଁକି ସେ ଏ ଦୁଇଜଣଙ୍କ ପ୍ରେମ-ପଥରେ ବାଧା ରୂପେ ଠିଆ ହେଲା ? ଏ ଦୁଇଜଣଙ୍କ ମଧ୍ୟରେ ସେ ଠିଆ ହୋଇଛି—ଏକ ବୃହତ୍ ଦୁର୍ଭେଦ୍ୟ ପଥର କାନ୍ଥ ପରି ! !

ପ୍ରଣତି ନିଜ ଭଗବାନଙ୍କ ନିକଟରେ ପ୍ରାର୍ଥନା ଜଣାଇଲା ପରେ ସେ ଆତଙ୍କିତ ହୋଇ ଉଠେ—ନା, ନା ! ସେ ମରିପାରିବନାହିଁ—ମରିପାରିବନାହିଁ, ମଲେ ଯେ ସ୍ୱାମୀଙ୍କୁ ଚିରଦିନ ପାଇଁ ହରାଇବାକୁ ହେବ !

Digitized by srujanika@gmail.com

ସୁରେଶ ବୁଝି ପାରେ, ପ୍ରଣତିର ବେଦନା । ପ୍ରଣତିର ପୀଡ଼ିତ ମ୍ଳାନ ମୁହଁଟିକୁ ଦେଖି ତାର ମନଟା ଅନୁତାପରେ ପୂର୍ଣ୍ଣ ହୋଇଯାଏ । ଆଖିଥିରେ ତାକୁ ପାଖକୁ ଟାଣିଥାଏ, କିନ୍ତୁ ବକ୍ଷ ନିକଟକୁ ନେଇ ପାରେ ନା । ଅତୀତର କଥା ମନେପଡ଼ିଯାଏ; ଆଉ ସଙ୍ଗେ ସଙ୍ଗେ ତା ହାତର ବନ୍ଧନ ଶିଥିଳ ହୋଇଆସେ—ଅପରାଧୀ ପରି ମୁହଁ ତଳକୁ କରିଦିଏ ସେ ।

ସ୍ୱାମୀଙ୍କ ମନୋଭାବ ସ୍ପଷ୍ଟରୂପେ ଜାଣିପାରେ ପ୍ରଣତି । ଆଖିଦୁଇଟି ଛଳ ଛଳ ହୋଇଯାଏ ତାର । ବେଦନାରେ, ଅପମାନରେ, ଅଭି-ମାନରେ ଗୋଟିଏ ଉତ୍ତପ୍ତ ଦୀର୍ଘନିଃଶ୍ୱାସ ତାର ବକ୍ଷ ଭେଦ କରି ବାହାରି ଆସେ । ପରୀକ୍ଷାରେ ଅଭାଗିନୀ ଦୂରକୁ ଘୁଞ୍ଚିଯାଏ ! ଅତୀତ ଉପରେ ଈର୍ଷା ଜାତ ହୁଏ, ରାଗ ହୁଏ— ଆଉ ଦୁଃଖ ମଧ୍ୟ ହୁଏ-ଶେଷରେ ସେ ଅଶ୍ରୁକୁ ସମ୍ବଲ କରେ ।

ଏହିପରି ତା ଜୀବନର ଆପାତତଃ ସୁମଧୁର ବେଳାଟି ଦୁଃଖ, ଶୋକରେ ପରିପୂର୍ଣ୍ଣ ହୋଇ ଗତ ହୋଇଯିବାକୁ ଲାଗିଲା । ସୁରେଶ ଯଥାସାଧ୍ୟ ଚେଷ୍ଟା କରୁଥାଏ ପ୍ରଣତିର ଦୁଃଖ ମୋଚନ କରିବାକୁ । ଦୁଃଖିନୀ ପ୍ରଣତି ପ୍ରତି ସହାନୁଭୂତି ଜାତ ହୁଏ ତା ମନରେ ।

ସୁଦୀର୍ଘ ଦୁଇବର୍ଷ ବିତିଯିବା ପରେ ପ୍ରଣତିର କୋଳ ପୂର୍ଣ୍ଣକରି ଆସିଲା ତାର ଶିଶୁପୁତ୍ର । ଏହି କ୍ଷୁଦ୍ର ଶିଶୁଟି ଉପରେ ନିର୍ଭର କରି ତାର ସମସ୍ତ ପ୍ରକାର କଷ୍ଟର ଅବସାନ ହେବ ବୋଲି ଆଶା କରିଥିଲା ପ୍ରଣତି । କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଅନ୍ୟପ୍ରକାର । ନବମାତୃତ୍ୱର ଗୌରବରେ ମଣ୍ଡିତ ହେଲାପରେ ସେ ଯେତେବେଳେ ଗଭୀର ସ୍ନେହଭରେ ଶିଶୁଟିକୁ କୋଳକୁ

Digitized by srujanika@gmail.com

ଉଠାଇ ଆଣି, ପ୍ରଥମଥର ତାର ସୁନ୍ଦର ମୁହଁଟି ଆଡ଼କୁ ଚାହିଁଲା, ହଠାତ୍ ତା'ର ହୃଦ୍‌ସ୍ପନ୍ଦନ କ୍ରିୟା ଯେପରି ବନ୍ଦ ହୋଇଗଲା । ତାର ସାରା ଦେହମନକୁ ନିଃସ୍ତବ୍ଧ କରିଦେଇ ଗୋଟିଏ କଥାମାତ୍ର ତା ମନରେ ଝଲକି ପରି ଖେଳିଗଲା···ଶିଶୁର ମୁହଁଟି ଯେ ଠିକ୍ ଅରୁଣ ପରି ହୋଇଛି ।

ଅନ୍ତରଟା ତାର ଜଳିଗଲା ଯେମିତି—ଏହି ନିଷ୍ପାପ ଶିଶୁଟି ମଧ୍ୟ ଯେପରି ତାର ଶତ୍ରୁ ! ତାର କ୍ଷତବିକ୍ଷତ ହୃଦୟରେ ସ୍ନିଗ୍ଧ ପ୍ରଲେପ ଦେବାକୁ ଆସିନାହିଁ ଏହି କ୍ଷୁଦ୍ର ଜୀବଟି, ଆସିଛି କ୍ଷତସ୍ଥାନରେ ଲୁଣ ବୋଳିଦେବାପାଇଁ । ଅରୁଣ ! ଅରୁଣ ! ଗୃହଅଙ୍ଗେ ଭିନ୍ନ ଭିନ୍ନ ରୂପ ଧରି ଅରୁଣ ଯେପରି ପ୍ରଶାନ୍ତକୁ ନିଃଶେଷ କରିଦେବା ପାଇଁ ବସିଛି ! ତାର ଗୃହଅଙ୍ଗେ ନିଆଁ ଲଗାଇ ଦେଉଛି ।

ବେଳେ ବେଳେ ଅଧୀର ହୋଇ ସେ ସୁରେଶକୁ ହିଁ ପ୍ରଶ୍ନ କରି-ଦିଏ—"ପୁଅର ମୁହଁଟା ତା' ପରି ନା ? ଆଖି ଦୁଇଟା···"

ପ୍ରଶାନ୍ତର ପ୍ରଶ୍ନ ଶୁଣି ସୁରେଶ ଚମକି ଉଠେ । ସାରା ମୁହଁଟା ତାର ବିବର୍ଣ୍ଣ ହୋଇଯାଏ । ଶିଶୁଟି ଆଡ଼କୁ ଥରେ ଚାହିଁବାକୁ ସୁଦ୍ଧା ତାକୁ ଭାରି ଭୟ ଲାଗେ ।

ସ୍ୱାମୀଙ୍କ ବିବର୍ଣ୍ଣ ମୁହଁ ଦେଖି ପ୍ରଶାନ୍ତର ଆହତ ହୃଦୟ ଅଭିନନ୍ଦନ କରିଉଠେ···"ତା ହେଲେ ଏବେ ମଧ୍ୟ ସ୍ୱାମୀ ଭୁଲିପାରିନାହାନ୍ତି ଅରୁଣକୁ ! !"

ଏକ ପାର୍ଶ୍ୱରେ ସ୍ୱାମୀ—ଆଉ ଅନ୍ୟପାର୍ଶ୍ୱରେ ପୁତ୍ର । ଏ ଦୁଇ-ଜଣ ଯେପରି ପ୍ରଶାନ୍ତର ଚତୁର୍ଦ୍ଦିଗରେ ରହି ତାକୁ କ୍ଷତବିକ୍ଷତ କରି-ଦିଅନ୍ତି ।

Digitized by srujanika@gmail.com

—ପିଧିର—

ଅରଣ୍ଡ ନିଜକୁ ବୁଝାଇବାକୁ ଚେଷ୍ଟାକଲେ—ସେ ତ ଅଙ୍ଗୀ ସମ୍ବଳଧାନା, କେଉଁ ନୁହଁ! ସୁରେଶର ହୃଦୟ ଭରି ପ୍ରେମ ଦେଇ ପାଇଛି! କିନ୍ତୁ···ଏ କିନ୍ତୁ'ଟାରେ ସବୁ ଯେମିତି ଗୋଳମାଳ ହୋଇଯାଏ! ସବଂଦର ପରି ହାହାକାର କରି ଉଠେ ତା'ଅନ୍ତର—ମନେହୁଏ ତା ଜୀବନଟା ବ୍ୟର୍ଥ ହୋଇଯାଇଛି।

ଉମା ଓ ରମକାବୁ ଅନେକ ଚେଷ୍ଟା କରିଥିଲେ ତାକୁ ବିବାହ କରିବାକୁ ସମ୍ମତ କରାଇପାରିଲେ ନାହିଁ ଆଉ। ଅରଣ୍ଡ ସ୍ପଷ୍ଟ ଭାବେ ଜଣାଇଦେଲେ ଯେ, ସେ ଆଉ ବିବାହ କରିବନାହିଁ; ଏ ସବୁ ବିଷୟରେ ଗଭୀର ବିତୃଷ୍ଣା ଜନ୍ମି ଯାଇଛି ତା ମନରେ। ବରଂ ସେ ଆଉଥରେ ଛାତ୍ରୀ ଜୀବନକୁ ଅବଲମ୍ବନ କରିବ।

କେହି ତାକୁ ବାଧା ଦେଇପାରିଲେ ନାହିଁ। ସମସ୍ତ ମନ-ପ୍ରାଣ ନିୟୋଜିତ କରି ଆଉ ଥରେ ଡାକ୍ତରୀପଢ଼ା ଆରମ୍ଭ କଲା—ଦୂର ବିଦେଶକୁ ଯାଇ। କାରଣ ଏଠାରେ ଥିଲେ, ସୁରେଶ ସହିତ ବାରମ୍ବାର ଦେଖା ହେଇଯିବା ଆଶଙ୍କା ଅଛି। ପ୍ରାୟ ଆଉ ତାଙ୍କ ମୁହଁକୁ ସେ ସେହି-ଦିନଠାରୁ ଦ୍ୱିତୀୟଥର ପାଇଁ ଦେଖିନାହିଁ। ଏପରିକି, ନାଁ ଶୁଣିନାହିଁ। ଗୋଟା ଜଗତଟା ଯାକ ଉପରେ ଅବିଶ୍ୱାସ ଜନ୍ମି ଯାଇଥିଲା ତା'ର।

ଅପୂର୍ବ ଦୃଢ଼ତା ସହିତ ତା'ର ଭାଙ୍ଗି ପଡ଼ିଥିବା ଜୀବନକୁ ସେ ଅବସ୍ଥରେ ଠିଆ କରାଇଲା। ଦୁଇ ତିନିବର୍ଷ କଟିଗଲା ନୀରବରେ।

Digitized by srujanika@gmail.com

× × × ×

ବାପାଙ୍କ ଶରୀର ଅସୁସ୍ଥ ଶୁଣି, ବାଧ୍ୟ ହୋଇ ତାକୁ ଆସିବାକୁ ପଡ଼ିଲା । ଘରେ ପାଦ ଦେବାକ୍ଷଣି ଆରତିର ନଜର ପଡ଼ିଲା ପ୍ରାନ୍ତର ଘର ଉପରେ—ଶୂନ୍ୟ ଘରଟି ଖାଁ ଖାଁ କରୁଛି । କେତେ ସ୍ମୃତି ଜଡ଼ିତ ରହିଛି ଏହି ଘରଟି ସଙ୍ଗେ । ଖୁଡ଼ୀ-ମାଙ୍କ ଠାରୁ ସେ ଶୁଣିଲା, ଦୁଇମାସ ପୂର୍ବେ କଲେରାରେ ଆକ୍ରାନ୍ତ ହୋଇ ଉଷା ପରପାରକୁ ଚାଲିଯାଇଛନ୍ତି । ମଲ୍ଲବେଳକୁ ମଧ୍ୟ ଅଭାଗିନୀ ନିଜେ ଶାନ୍ତିରେ ମରିପାରିନାହାନ୍ତି—ହୁଏତ, ଗୋଟିଏ ସୁକୁମାର କୁମାରୀ-ଜୀବନ ବ୍ୟର୍ଥ କରିଦେବାର ଫଳ ପ୍ରାପ୍ତ ହେଲେ ସେ । ବାରିପଦାକୁ ବଦଳି ହୋଇଯାଇଥିଲା ସୁରେଶ । ରାମବାବୁଙ୍କ ପ୍ରେରିତ ତାର ପାଇ ପ୍ରଶାନ୍ତ ଓ ସୁରେଶ ଆସି ପହଞ୍ଚିବାର ବହୁତ ଆଗରୁ ଉଷାଙ୍କ ସନ୍ତପ୍ତ ପ୍ରାଣର ଅବସାନ ଘଟିସାରିଥିଲା । ମଲ୍ଲ-ବେଳକୁ ଉଷା ବାରମ୍ବାର କ୍ଷମା ମାଗିଛନ୍ତି ଉମାଙ୍କଠାରେ, ଆରତି-ଠାରେ ।

ଉଷାଙ୍କ କଥା ମନେ ପକାଇ ଉମା ଆଖିରୁ ଲୁହ ଗଡ଼ାଇଲେ । ହାୟରେ ସନ୍ତାନ ପ୍ରେମ !

× + ×

ରାମବାବୁଙ୍କ ଶଯ୍ୟା ନିକଟରେ ବସିଥିଲା ଆରତି—ଏହି ଘରଟିରେହିଁ ସୁରେଶକୁ ବସାଇ ଥିଲା ସେ···ତାର ମନେ ପଡ଼ିଗଲା ଅତୀତ କଥା । ଛିଃ । ଆରତି ନିଜମନକୁ ଶାସନ କରି କାନ୍ଥର ଛବି ଗୁଡ଼ିକ ଦେଖିବାକୁ ଆରମ୍ଭ କଲା । ହଠାତ୍ ସେହି ଛବିଟି ଉପରେ ନଜର ପଡ଼ିବାରୁ କହିଲା—"ବାପା, ତମ ବଡ଼ଭାଉଣୀ କେବେ ମରିଯାଇଥିଲେ ? ମୁଁ ତାଙ୍କପରି ନିକେ ଦେଖିବାକୁ ହୋଉଛୁ ନା ।"

Digitized by srujanika@gmail.com

ରାମବାବୁ ଠିକ୍ ସେଇକ୍ଷଣ ବେଳକୁ ସେହି ଛବିଟିକୁ ଦେଖି ଗତ-କଥା ମନେ ପକାଉଥିଲେ । ଆରତିର ପ୍ରଶ୍ନ ଶୁଣି, ହଠାତ୍ ସେ କହି-ପକାଇଲେ—"ଆରତି, ତୋର ବାପା ସେ—ସେ !"

ଏହି ଅପ୍ରତ୍ୟାଶିତ ଉତ୍ତରରେ ଆରତି ବିସ୍ମୟରେ ହତବାକ୍ ହୋଇଗଲା ।

କିଛିକ୍ଷଣପରେ ଆରତି କହିଲା—"ଏ ମୋ ବାପା କିପରି ହେଲେ ?"

ରାମବାବୁ ମ୍ଳାନ ହସି କହିଲେ, "ଆରତି, ତୁ ମୋର ଝିଅ ନୋହୁଁ—ଏତେ ଦିନ ହେଲା କଥାଟା ଲୁଚାଇ ରଖା ହୋଇଥିଲା—"

ରାମବାବୁ ଧୀରେ ଧୀରେ ବିଗତ ଘଟଣା ଗୁଡ଼ିକ କହିଗଲେ । କୌତୁହଳ ସହିତ ଆରତି ଶୁଣିବାକୁ ଲାଗିଲା । ଉମାଙ୍କୁ 'ଖୁଡ଼ୀ- ମା' ଡାକିବାର ତାତ୍ପର୍ଯ୍ୟ ଏତେ ଦିନପରେ ବୁଝିପାରିଲା ସେ ।

ଶେଷରେ ରାମବାବୁ କହିଲେ, "ଆରତି—ମୁଁ ଭାଇନାଙ୍କ ଅମ୍ମାକୁ ମଧ୍ୟ ସୁଖୀ କରିପାରିଲିନାହିଁ । ତୋର ଜୀବନଟାକୁ ଦୁଃଖମୟ କରିଦେଲି ଆରତି···ତତେ ସୁଖୀ କରିପାରିଲିନି ମା, ତୋ ଜନ୍ମଦାତାଙ୍କୁ ମଧ୍ୟ ସୁଖୀ କରିପାରି ନ ଥିଲି ।"

ରାମବାବୁଙ୍କ ଆଖିରୁ ଦୁଇଧାର ଲୁହ ବହିପଡ଼ିଲା । ନିଜ ଅଞ୍ଚଳ-ରେ ନମ୍ରତା ସହିତ ତାହା ପୋଛି ଦେଇ ଆରତି କହିଲା, "ଛିଃ ବାପା ! ମିଛରେ ଦୁଃଖ କରୁଛ କାହିଁକି ? ଯାହା କପାଳରେ ଯାହା ଲେଖା ହୋଇଥିବ, ତା' କଷ୍ଟକୁ ଭୋଗ କରିବ ସେ ।"

ଆରତି ଆଉଥରେ ଛବିଟି ଆଡ଼କୁ ଚାହିଁଲା । ସେ ତାର ଜନ୍ମ-ଦାତା ! ଅଥଚ ଗୋଟିଏ ନିଷ୍ଠୁରକର ଅନୁଭୂତି ଯା' ତା' ଜୀବନରେ !

Digitized by srujanika@gmail.com

କେତେଦିନ ତଳର ବିସ୍ମୟ ଜନକ ଘଟଣା ମନେ ପଡ଼ିଲା—ସେ ଦିନ ସୁଚରିତ କହିଥିଲା ଏ ଛବିଟିକୁ ଦେଖାଇ, "ଅରୁଣ, ଏ ଛବିଟି ସହିତ ତୁମର ଅନେକ ସାଦୃଶ୍ୟ ଅଛି, ଯେପରି ତୁ ମ ତାଙ୍କର ନିଜର ଝିଅ।" ତା' ପରେ ପରେ ମନେ ପଡ଼ିଲା, ସେ ଦିନର ଘଟଣା ଗୁଡ଼ିକ। ଯାଉ—ସେ ଗୁଡ଼ିକ ବିସ୍ମୃତିର ଗର୍ଭରେ ଲୁଚି ରହିଥାଉ । ହସମାଡ଼େ ତାକୁ, ତା' ଜୀବନରେ ବେଶ୍ ଗୁଡ଼ାଏ ଘଟଣା ଘଟିଗଲା ତ ! ଲେଖିଲେ ଗୋଟିଏ ଉପନ୍ୟାସ ହୁଅନ୍ତା !

କିଛିଦିନ ପରେ ରାମବାବୁ ସୁସ୍ଥ ହୋଇଉଠିଲେ । ଯା'ପରେ, ଅରୁଣର ମନେହେଲା ଯେ ଏହି ବିଶାଳ ସଂସାରରେ ଆଉ କେହି, ତାର ଆପଣାର ହୋଇନାହାନ୍ତି—ସେ ଏକା !

ଯେଉଁ ଖୁସୀ—ମା' ଓ ବାପାଙ୍କ ସ୍ନେହ ଯେ ଏ ପର୍ଯ୍ୟନ୍ତ ପାଇ ଆସିଥିଲା ଏବଂ ସେଥିରେ ଗଢ଼ା ହୋଇଥିଲା ମଧ୍ୟ, ଆଜି କାହିଁକି ତାର ମନେହେଲା—ଏ ସ୍ନେହ ନିର୍ଜୀବ ! ରସହୀନ ! ତିନି ଚାରିବର୍ଷର ସୁକୁମାର ବାଳକ ରବୀନ୍ଦ୍ର ପ୍ରତି ଈର୍ଷା ଜାତ ହେଲା ମନରେ ।

ଏହି ମନୋଭାବ ପାଇଁ ସେ ମନେ ମନେ ଲଜ୍ଜିତ ହୁଏ, କିନ୍ତୁ ମନରୁ ସେ ଭାବଟା ଆଉ ସେ ତଡ଼ିଦେଇ ପାରେ ନା ।

ଅରୁଣର ପରିବର୍ତ୍ତନ ଦେଖି ରାମବାବୁ ଦୁର୍ବଳ ମୁହୂର୍ତ୍ତରେ ପ୍ରକାଶ କରିଦେଇଥିବା କଥାଟା ପାଇଁ ଅନୁତାପ କରନ୍ତି । ଅଧିକ ଆଦର ଦେଇ ତାଙ୍କୁ ଭୋଳାଇଦେବାକୁ ଚେଷ୍ଟା କରନ୍ତି, କିନ୍ତୁ ଅରୁଣ ଆଉ ସେ ଆଦର ତଳେ ରହିବାକୁ ଚାହେଁ ନା !!



Digitized by srujanika@gmail.com

## —ଷୋଳ—

ଆଜି କେତେ ବର୍ଷ ପରେ !

ଗୋଟିଏ ବଡ଼ ଗାଁରେ ଅରୁନ୍ଧତି ଲେଡ଼ି ଡ଼ାକ୍ତର ହୋଇ ରହିଛି । ଆସିଲା ପରେ ନିଜ ଚେଷ୍ଟାରେ ସେ ଗୋଟିଏ ଅନାଥ-ଶିଶୁ—ଆଶ୍ରମର ପରିଚାଳିକା ରୂପେ ନିଯୁକ୍ତ ହୋଇଛି ମଧ୍ୟ । ରମବାବୁ ସତ୍‌କାର୍ଯ୍ୟ ପାଇଁ ନିଜର ବିଶାଳ ସମ୍ପତ୍ତିର ଏକାଂଶ ଦେଇଛନ୍ତି ତାକୁ । ଅକାତରେ ଅର୍ଥ ବ୍ୟୟ କରି ଅରୁନ୍ଧତି ଗାଁ ଟିର ଅନେକ ଉନ୍ନତି କରିଛି । ଏଇଥିପାଇଁ ଗାଁର ଲୋକମାନଙ୍କ ନିକଟରେ ସେ ଦେବୀ ପରି ।

ମଧୁପୁର ଗାଁ ଟି ବେଶ ବଡ଼ । ଗୃହଅଞ୍ଚଳେ ବେଶ୍ ପରିଷ୍କାର ପରିଚ୍ଛନ୍ନତାର ଅଭାବ ମିଳେ । ଷ୍ଟେସନ୍‌ରୁ ଗାଁ ଭିତରକୁ ପ୍ରଥମେ ପ୍ରବେଶ କଲେ ନଜର ପଡେ ସୁଦୃଶ୍ୟ ପରିଷ୍କାର ପରିଚ୍ଛନ୍ନ ଡ଼ାକ୍ତରଖାନା । ଡ଼ାକ୍ତରଖାନାଟି ଛୋଟ ହେଲେ ମଧ୍ୟ, ଏହିପରି ପରିଷ୍କାର ପରିଚ୍ଛନ୍ନ, ରୋଗୀମାନଙ୍କ ପ୍ରତି ସ୍ନେହ, ଦୟା, ଅକାତର ସେବା ଥିବା ଡ଼ାକ୍ତରଖାନାଟିଏ ବଡ଼ ସହର ମାନଙ୍କ ମଧ୍ୟରେ ସାଧାରଣତଃ ଦେଖିବାକୁ ମିଳେ ନା ।

ନାଲି ରାସ୍ତାଟି ରକ୍ତଧାର ପରି ସର୍ପିଲ ଗତିରେ ଚାଲିଯାଇଛି ଗାଁ ଭିତରକୁ । ରାସ୍ତାଟିର ଅନ୍ୟପାର୍ଶ୍ୱରେ, ଠିକ୍ ଡ଼ାକ୍ତରଖାନା ସମ୍ମୁଖରେ ଅନାଥ-ଶିଶୁ-ଆଶ୍ରମ, ତାକୁ ଟିକିଏ ଛାଡ଼ି ଅରୁନ୍ଧତିର ଚେଷ୍ଟାରେ ତିଆରି ହୋଇଥିବା ଗ୍ରାମ-ସ୍କୁଲ ।

Digitized by srujanika@gmail.com

ରାସ୍ତାର ଏ ପାର୍ଶ୍ୱରେ ଡାକ୍ତରଖାନା, ପରେ ଲେଡ଼ି ଡ଼ାକ୍ତରଙ୍କ ଘର, ତାʼପରେ ଆଉ ଦୁଇଜଣ ଡ଼ାକ୍ତରଙ୍କ ଘର। ଆଉ ଅଳ୍ପ ଦୂର ଅଗ୍ରସର ହେଲେ, ଦେଖାଯାଏ ରାସ୍ତା ଦୁଇପାଖରେ ଗୃହଧାଡ଼ି ଗୁଡ଼ିକ। ସୈନିକମାନଙ୍କ ପରି ଲାଇନ୍ ବାନ୍ଧି ମୁଣ୍ଡ ଟେକି ଠିଆ ହୋଇଛନ୍ତି ଗୃହ-ଘର ଗୁଡିକ ଦୁଇପାଖରେ। ରାସ୍ତା ଦେଇ ସିଧା ଗଲେ, ଗୃହଘର ପରେ ଦେଖାଯାଏ ମନୋରମ ଆମ୍ର ବଗିଚା। ତାପରେ ଗ୍ରାମ ସୀମାନ୍ତରେ ଅଛି ଗୋଟିଏ ପ୍ରଶସ୍ତ, ପରିଷ୍କାର ପୁଷ୍କରିଣୀ।

ଏ ହେଲା ମଧୁପୁର ଗାଁ ଟିର ସାଧାରଣ ପରିଚୟ।

ଏ ମଫସଲଟିର ସଂସ୍କାର କରିବା ପାଇଁ ଯେ କେତେକଷ୍ଟ ପଡ଼ିଛି, ତା କେବଳ ଆରତି ଜାଣେ। ଯା ହେଉ...ଭଗବାନଙ୍କ ଦୟାରୁ ତା ଇଚ୍ଛା ପୂର୍ଣ୍ଣ ହୋଇଛି।

ତାର ତୃଷିତ ମାତୃ ବକ୍ଷ ଶୀତଳ ହୋଇଛି, ଅଶ୍ରମର ଶିଶୁ-ଗୁଡ଼ିକୁ ପାଳନ କରି। ସେମାନଙ୍କ କଳହାସ୍ୟରେ ସିକ୍ତ ହୋଇଯାଇଛି, ତାର ମରୁଭୂମିସମ ଜୀବନଟା।

ବିଗତ କଥା ପ୍ରାୟ ଭୁଲିଗଲାଣି ସେ! ଠିକ୍ ଭୁଲିଗଲାଣି କହିଲେ, ହୁଏତ ଭୁଲ୍ ହେବ। ବୋଧହୁଏ ସେ ଇଚ୍ଛା କରି ନିଜର ସ୍ମୃତି ପଥକୁ ଆଣୁନାହିଁ ସେ କଥା ଗୁଡ଼ାକ।

ଆରତି ଯେତେବେଳେ ଅଶ୍ରମକୁ ଯାଏ, ତାକୁ ଦେଖିବାମାତ୍ରେ ଛୋଟ ଛୋଟ ଶିଶୁଗୁଡ଼ିକ ଘେରିପକାନ୍ତି ତାକୁ। ଶିଶୁଗୁଡ଼ିକ ଯେପରି ତାର ଆଗମନ ପଥକୁ ଚାହିଁ ରହିଥାନ୍ତି।

ଆରତି କାହାକୁ କୋଳକୁ ଉଠାଇ ନିଏ, କାହାକୁ ପାଖକୁ ଟାଣିଆଣେ, କାହାର ହାତ ଧରି ଆଦର କରେ। କାହାପାଇଁ

Digitized by srujanika@gmail.com

ତାର ଅଛି ଚଞ୍ଚଳ ଅସ୍ଥିର ଚକ୍ଷୁ ଦୁଇଟି ସଜଳ ହୋଇ ଉଠେ । ଜଗ-ତରେ ଏହି ଶ୍ରେଷ୍ଠ ପ୍ରାଣଗୁଡ଼ିକ ହିଁ ତାର ଅତି ଆପଣାର—ସଂସାରୀ-ଙ୍କ ସ୍ନେହଯୋଗ୍ୟ । ତାର ତୃଷିତ ହୃଦୟର ସୁଶୀତଳ ବାରି ।

ଶିଶୁ ଗୁଡ଼ିକ ଅସ୍ପଷ୍ଟ ଭାଷାରେ ନିଜ ନିଜର ବକ୍ତବ୍ୟ କହି ଯାଆନ୍ତି । ଏହି ଅଧା ଅଧା ମଧୁର କଥା ଗୁଡ଼ାକ ଶୁଣିବା ପାଇଁ ଅରତି ସବୁବେଳେ ଉନ୍ମୁଖ ରହିଥାଏ । ସମସ୍ତଙ୍କର ମା ସେ । ନିଜର ମିଷ୍ଟ କଥାରେ ଶିଶୁମାନଙ୍କୁ ଶାନ୍ତ କରି ସେମାନଙ୍କ ଦାବୀ ମେଣ୍ଟାଇ ଦିଏ ସେ ।

ଏହାପରି ଅନେକ ସମୟରେ ସେ ଯେତେବେଳେ ଆଶ୍ରମର ପାଖ ଛଅ ଜଣ ମହିଳା-କର୍ମୀଙ୍କୁ ଯଥାବିଧି ଉପଦେଶ ଦେଇ, ଆଶ୍ରମର କାର୍ଯ୍ୟା-ବଳୀ ତଦାରଖ କରି, ବାହାରି ଆସେ ବାହାରକୁ, ସେତେବେଳେ ମନେହୁଏ ସବୁ ଶୂନ୍ୟ । ଏହି ଯେଉଁ ଦେବତୁଲ୍ୟ ସରଳ ଶିଶୁ ଗୁଡ଼ିକ, ଆଜି ତାକୁ ସେମାନଙ୍କ ଜନନୀ ଭାବି ତା'ପାଖରେ ଏତେ ଆଦର, ଜିଗର କରୁଛନ୍ତି, କିନ୍ତୁ ଦିନ ପରେ ସେମାନେ ଯେତେବେଳେ ଜ୍ଞାନଲାଭ କରି ପ୍ରକୃତ କଥା ଜାଣିପାରିବେ, ସେତେବେଳେ ହୁଏତ ସେମାନେ ତା'ଠାରୁ ଦୂରକୁ ଗୁଛିଯିବେ—କୁଆଡେ ଉଭେଇଯିବ ଏଇ ସ୍ୱର୍ଗୀୟ ସ୍ନେହ ।

ହାୟରେ ! ବଣରୁ ହରିଣ ଶିଶୁଗୁଡ଼ିକୁ ଆଣି ନିଜ ହୃଦୟ ଦେଇ ପାଳନ କରୁଛି ସେ । ଯେଉଁଦିନ ବନ୍ଧନ ଛିଣ୍ଡିଯିବ, ଅଜ୍ଞାତରେ ସେମାନେ ଚାଲିଯିବେ ସେହି ବଣକୁ । ତା ନିଜର ହୋଇ କେହି ଆଉ ରହିବେ ନାହିଁ । ଅଜ୍ଞାତରେ ସେ ଯେଉଁ ଏକାକିନୀ ସେହି ଏକା-କିନୀ । ତାର ମୃତ୍ୟୁ ପରେ କେହି ଆଉ ତାର ସ୍ମୃତି ହୋଇ ରହିବ ନାହିଁ । ଚିରଦିନ ପାଇଁ ବିସ୍ମୃତିର ଗର୍ଭରେ ଲୁଚିଯିବ ସେ ।

Digitized by srujanika@gmail.com

ମନରେ ଏହିପରି ଭାବି ଭାବି, ସେ ଡାକ୍ତରଖାନାରେ ଉପସ୍ଥିତ ହୁଏ । ରୋଗୀମାନଙ୍କର ମୁହଁ ହୋଇଯାଏ ଉଜ୍ଜ୍ୱଳ । ମଧୁପୁର ଗାଁଟି ଗୋଟିଏ ସ୍ୱାସ୍ଥ୍ୟକର ସ୍ଥାନ ବୋଲି କୌଣସି ୱାର୍ଡ ଖାଲି ନ ଥାଏ ଡାକ୍ତରଖାନାର । ସବୁ ପୂର୍ଣ୍ଣ ହୋଇ ଯାଇଥାଏ ରୋଗୀମାନଙ୍କ ଦ୍ୱାରା । ଆଉ ଦୁଇଜଣ ପୁରୁଷ ଡାକ୍ତର ଥିବା ସତ୍ତ୍ୱେ ରୋଗୀମାନେ ଲୋଡ଼ନ୍ତି ଏହି ଦୟାବତୀ ନାରୀର ମୁହଁରୁ ଦିପଦ ସାନ୍ତ୍ୱନା କଥା । ଆରତି ସମସ୍ତଙ୍କ କଥା ଶୁଣେ—ସମସ୍ତଙ୍କ ଅଭାବ ମେଣ୍ଟାଇବାକୁ ଚେଷ୍ଟା କରେ—ରୋଗୀଙ୍କ ମନ ନାଚି ଉଠେ ।

ଅତ୍ୟନ୍ତ ଧୈର୍ଯ୍ୟଶୀଳା ହୋଇଉଠିଛି ଆରତି । ଡାକ୍ତରଖାନାର କର୍ତ୍ତବ୍ୟ ସାରିଲା ପରେ ମଧ୍ୟ ଦ୍ୱିପ୍ରହରରେ ସେ ଗ୍ରାମର ଅଶିକ୍ଷିତା ନାରୀମାନଙ୍କୁ ନେଇ ବସେ । ସୂତା କଟା, ସିଲାଇ, ପାଠପଢ଼ା ଇତ୍ୟାଦି ସଙ୍ଗେ ହସ-ଖୁସି-ଗଳ୍ପସଳ୍ପ କରିବା ମଧ୍ୟ ନିୟମିତ ଚଳେ ।



Digitized by srujanika@gmail.com

## —ସତର—

ଦିନେ ସକାଳେ ଷ୍ଟେସନ୍ ଅଡ଼ୁ ଗୋଟିଏ ଘୋଡ଼ାଗାଡ଼ି ଆସି ଡାକ୍ତରଖାନା ସମ୍ମୁଖରେ ରହିଲା । ଗାଡ଼ି ଭିତରୁ ଜଣେ ଗୌରବର୍ଣ୍ଣ ଭଦ୍ରଲୋକ, ସଙ୍ଗରେ ଗୋଟିଏ ପାଞ୍ଚବର୍ଷର ସୁନ୍ଦର ବାଳକକୁ ଧରି ବାହାରି ଆସିଲେ ।

ଡାକ୍ତରଖାନାରୁ ଯାଇ କଣ ବୁଝି ଭଦ୍ରଲୋକ ଅନାଥଶିଶୁ ଆଶ୍ରମ ଅଡ଼କୁ ଅଗ୍ରସର ହେଲେ ।

ଗାଁ ଗୁଡ଼ିଆଡ଼େ ଘେରିରହିଥିବା ବିସ୍ତୀର୍ଣ୍ଣ ଧାନ-କ୍ଷେତ ଗୁଡ଼ିକ ଉପରେ ପ୍ରଥମ ସୂର୍ଯ୍ୟ କିରଣ ଆସି ଝରିପଡ଼ୁଛି । ଶ୍ୟାମଳ ଧାନ-ଗଛ ଗୁଡ଼ିକ ସୁନେଲି ସୂର୍ଯ୍ୟ କିରଣରେ ଝଲମଲ କରୁଛି । ବାଟରେ ଯାଉ ଯାଉ ବାଳକ ବ୍ୟସ୍ତବ୍ୟସ୍ତ ହୋଇ ପଚାରୁଥିଲା । ପିତାଙ୍କୁ, "ବାପା—ମା ମୋର କାହାନ୍ତି ?" ପ୍ରଶ୍ନ ପଚାରିଲା ।

ପିତା ଆଶ୍ରମଟିକୁ ଦେଖାଇ ଉତ୍ତର ଦେଉଥିଲେ, "ସେଠା ଭିତରେ ଲୁଚିଛନ୍ତି ମା !"

× × × ×

ଜଣେ ମହିଳା-କର୍ମୀ ଆସି କହିଲା ।

"ଆସନ୍ତୁ ଦେବୀ, ଜଣେ ଭଦ୍ରଲୋକ ଆସିଛନ୍ତି ତୁମ ସଙ୍ଗେ ସାକ୍ଷାତ କରିବାକୁ ।"

Digitized by srujanika@gmail.com

ଅରେଣ ଟେବୁଲ ଉପର କାଗଜ ପତ୍ର ଗୁଡ଼ାକ ଠିକ୍ କରୁ କରୁ କହିଲେ, "ନେଇଆସ ଏଠାକୁ—ବୋଧହୁଏ କୌଣସି ରୋଗୀ ପାଇଁ ଡାକ ଆସିଥିବ—ହଁ, ଆଉ ଶୁଣ, ଏ କାଗଜ ତକ ରଖିଦିଅ—"

କମ୍ପାଉଣ୍ଡର ଅରେଣର ନିର୍ଦ୍ଦେଶ କ୍ରମେ କାଗଜ ବଣ୍ଡାକ ଧରି ଚାଲିଗଲା ।

ଅରେଣ ଅନ୍ୟମନସ୍କ ଭାବେ ଆଗନ୍ତୁକଙ୍କ ଅପେକ୍ଷାରେ ବସି ରହିଲା ।

"ନମସ୍କାର !"

ଶୁଣି ଅରେଣ ଚମକି ଦୁଆର ଆଡ଼କୁ ଚାହିଁ ସ୍ତମ୍ଭିତ ହୋଇଗଲା । ପ୍ରଥମରେ ବିଶ୍ୱାସ ହେଲାନାହିଁ—ସେ ଭୁଲ ଦେଖୁ ନ ତ ! କିନ୍ତୁ ନା, ଏ ମୂର୍ତ୍ତି ଯେ ତାର ଅତି ପରିଚିତ ! ତା କଣ୍ଠରୁ ବାକ୍ୟ ବାହାରିଲା ନାହିଁ ।

ବିନା ଅନୁରୋଧରେ ଇନ୍ଦ୍ରଲେଖା ସଙ୍ଗୀ ବାଳକଟିର ହାତଧରି ଅରେଣର ସମ୍ମୁଖରେ ଥିବା ଚଉକିଟାରେ ବସିପଡ଼ିଲେ ।

ବାଳକଟି ଅରେଣ ଆଡ଼କୁ ବିସ୍ମିତ ନୟନରେ ଚାହିଁ ଧୀରେ ଧୀରେ ପିତାଙ୍କୁ ପ୍ରଶ୍ନକଲା—"ବାପା' ମା କାହାନ୍ତି ?"

ଇନ୍ଦ୍ରଲେଖା ଅରେଣ ଆଡ଼କୁ ଅଙ୍ଗୁଠି ଦେଖାଇ ସହଜ ଭାବେ କହିଲେ—"ହେଇଟି ତୋର ମା' ବସିଛନ୍ତି, ପରା !"

ବାଳକ ମୃଦୁକଣ୍ଠରେ ବିସ୍ମିତ ହୋଇ ପଚାରିଲା—"ଇ...ଏ...ଃ ମା ?"

ଇନ୍ଦ୍ରଲେଖା ମ୍ଳାନ ହସି କହିଲେ—"ହଁ !"

Digitized by srujanika@gmail.com

କିନ୍ତୁ ବାଳକ ଅବିଶ୍ୱାସ ଭରା ଦୃଷ୍ଟିରେ ଚାହିଁ ରହିଲା ଅନ୍ତେ ଅଛିଲୁ ।

ଭଦ୍ରଲୋକଙ୍କ କଥା ଶୁଣି ଅରୁଣର କର୍ଣ୍ଣମୂଳ ଆରକ୍ତ ହୋଇ-ଉଠିଲା । ହଠାତ୍ ଗୋଟିଏ ଅଦ୍ଭୁତ, ବିଜାତୀୟ କ୍ରୋଧ ଭାବ ଆସି ତା' ମନଟାକୁ ଅଧିକାର କଲା ।

କମ୍ପିତ ଉତ୍ତପ୍ତ କଣ୍ଠରେ ସେ କହିଲା, "ଛିଃ ସୁ—ରେ—ଶ ବାବୁ !" ଅର୍ଦ୍ଧପଥରେ କଥାଟା ରହିଗଲା ।

ସୁଦୀର୍ଘ ଅଠବର୍ଷ ପରେ ଦୁଇଜଣଙ୍କ ଭିତରେ ସାକ୍ଷାତ୍ । ସରଳ-କଣ୍ଠରେ ସୁରେଶ କହିଲା—"ଅରୁଣ—ଆମେ ଦୁଇଜଣ ଆସିଛୁ ତୁମ ଘରେ ରହିବାକୁ—ଆନ—"

ବାଧାଦେଇ ଅରୁଣ କଠିନ କଣ୍ଠରେ କହିଲା, "ଅରୁଣ ନୁହେଁ ସୁରେଶବାବୁ ! ଅନାଥ ଆଶ୍ରମର ପରିଚାଳକା ଓ ଏଠାର ଲେଡି ଡାକ୍ତର ଅରୁଣ ଦେବୀ ମୁଁ [illegible] ନାମରେ ଡାକିଲେ ମୁଁ ସୁଖୀ ହେବି [illegible] ଡାର ଅପଣଙ୍କର...ମୋର ସମସ୍ତ [illegible]

[illegible] ସୁରେଶ ଉତ୍ତର ଦେଲା, "ଅରୁଣ—ମୁଁ ମୋର [illegible] ରେ ରଖି ଦିବାକୁ ଆସିଛି !"

[illegible] କଣ୍ଠରେ ଅରୁଣ କହିଲା, [illegible] ଅପଣଙ୍କର ପୁତ୍ରର ସ୍ଥାନ [illegible] ନାହିଁ । ଆପଣ ଅନ୍ୟସ୍ଥଳରେ ଏ ସ୍ଥାନ—"

Digitized by srujanika@gmail.com

ଆରତି ଯେପରି ଫାଟି ପଡ଼ିବ । ଆଠ ବର୍ଷର ସଞ୍ଚିତ ବେଦନା ତାର ଆଜି ହୃଦୟ ଠେଲି ବାହାରି ପଡ଼ିବାକୁ ଚାହୁଁଛି ! ପ୍ରାଣପଣ ଚେଷ୍ଟା କରୁଛି ସେ ନିଜକୁ ଦମନ କରିବାକୁ, କିନ୍ତୁ ତାର ଶକ୍ତି ନାହିଁ । ଆଜି ତାର ପ୍ରାଣ ଚାହୁଁଛି କଠୋର ବାକ୍ୟରେ ସୁରେଶକୁ ଜର୍ଜରିତ କରିଦେବାକୁ ଆଜି ସହାୟ ହୋଇଛି ସୁରେଶ । ପୁତ୍ରର ପିତା ହୋଇ-ପାରିଛି ସେ । ଆଉ ସେ ନିଜେ—ନିଜେ ଏହି ସୁରେଶ ପାଇଁ ନିଜର ସବୁପ୍ରକାର ଇଚ୍ଛା ବଳି ଦେଇଛି—ନାରୀତ୍ୱର ଚରମ ଇଚ୍ଛାକୁ ବଳି ଦେଇଦେଇଛି । ଯେଉଁ ସୁରେଶ ଦିନେ ତାକୁ କହିଥିଲା, ଯେ ତା ବିନା ତା'ର ଜୀବନ ବ୍ୟର୍ଥ ହୋଇଯିବ, ସେ ବଞ୍ଚିପାରିବନି, ଆଜି ସେହି ସୁରେଶ ପିତୃତ୍ୱ ଗର୍ବରେ ଗର୍ବିତ ହୋଇ ତା ସମ୍ମୁଖରେ ବସି ସଗର୍ବେ ଉଚ୍ଚାରଣ କରୁଛି—"ମୋର ପୁଅ— !"

ଅନେକ କଥା ଖେଳିଗଲା ତା ମୁଣ୍ଡରେ ।

"ମୁଁ ସୁଖୀ ହେବି—ଶୀଘ୍ର ଏ ଘର ଛାଡ଼ିଗଲେ ।"

ଅପ୍ରତ୍ୟାଶିତ ଭାବେ ଆରତିର କ୍ରୋଧ ଦେଖି ସୁରେଶ ସ୍ତବ୍ଧ ହୋଇଗଲା । କ୍ରୋଧର କାରଣଟା କଣ ସେ ଜାଣିପାରିଲା ନାହିଁ । ଆଠବର୍ଷ ପରେ ଦେଖା, ଆରତି ତାରୁ କଣ ଏହି ବ୍ୟବହାର ଆଶା କରିଥିଲା ସେ !

ଆରତିର ଆଖିକୁ ମୁହଁକୁ ଚାହିଁ ମୃଦୁକଣ୍ଠରେ କହିଲା— "ଆ-ର-ତି !" କଣ୍ଠସ୍ୱରରୁ ତାର ସେପରି ଶତଧାରାରେ ବେଦନା ଝରିପଡୁଥିଲା !

ଆରତି ବିଦ୍ୟୁତ୍‌ସ୍ପୃଷ୍ଟ ପରି ଚମକି ଛିଡ଼ା ହୋଇ କ୍ରୋଧବିକୃତ କଣ୍ଠରେ କହିଉଠିଲା—"ନା, ନା ନେଇଯାଅନ୍ତୁ ମୋ ଆଗରୁ ଏଇଟାକୁ !"

Digitized by srujanika@gmail.com

ଅଳ୍ପ ସୁନାଗଦାରେ ଗର୍ବିତ ହୋଇ ବିଦ୍ରୂପ କରିବାକୁ ଆସିଛନ୍ତି ମତେ ?, ନା ପ୍ରଣତ ପଠାଇ ଦେଇଛି ? ମୋର କଟା ଘା ରେ ଲୁଣ ବୋଳି- ଦେବାକୁ ଆସିଛନ୍ତି ପୁଅର ହାତଧରି ?"

ଆରତିର ସେ ଧୃଷ୍ଟ ମୁହଁ, ବିକୃତ କଣ୍ଠସ୍ୱର ଶୁଣି ବାଳକଟି ଭୟରେ ସୁରେଶର ହାତଟାକୁ ଭିଡ଼ି ଧରିଲା ।

ଭୀତ ପୁତ୍ରକୁ ବକ୍ଷ ଉପରକୁ ଆଉଜାଇ ଆଣି ମ୍ଳାନ କଣ୍ଠରେ ସୁରେଶ କହିଲା, "ନା, ଆରତି, ବିଦ୍ରୂପ କରିବାକୁ ନୁହେଁ । ଆସିଛି— ଏହି ମାତୃହୀନ ଶିଶୁଟିର ଭାର ତୁମ ଉପରେ ଦେବାକୁ !"

ବିଜୁଳୀ ଆଲୁଅଟିର ସ୍ୱିଚ୍ ଟିପି ଦେଲେ ସେ ଯେପରି ଉତ୍- କ୍ଷଣାତ୍ ଦପ୍ କରି ଲିଭିଯାଏ, ସେହିପରି 'ମାତୃହୀନ' କଥାଟି ଶୁଣି, ଆରତିର କ୍ରୋଧାଗ୍ନି ଅକସ୍ମାତ ନିର୍ବାପିତ ହୋଇଗଲା ! ନିଜର ପରିତ୍ୟକ୍ତ ଚଉକିଟିରେ ବସିପଡ଼ି ସମ୍ମୁଖସ୍ଥିତ ଟେବୁଲ୍ ଉପରେ ବାହୁଦିଶି ତା ଭିତରେ ମୁହଁ ଲୁଚାଇ ଆର୍ତ୍ତକଣ୍ଠରେ କହିଲା, "ମାତୃ- ହୀନ ? ତେବେ···ତେବେ କଣ ମୋ ପ୍ରଣତ ନାହିଁ ?"

"ନା ଆରତି, ପନ୍ଦରଦିନ ତଳେ ସକଳ ଯନ୍ତ୍ରଣାରୁ ମୁକ୍ତି ପାଇ, ପ୍ରଣତ ଚାଲିଯାଇଛି !" ସୁରେଶ ମ୍ଳାନ ହସି ଆତ୍ମଗତରେ କଥା ଆରମ୍ଭ କଲା. "ଆରତି—ତୁମ କଥା ମାନିପାରିଲି ନାହିଁ । ପ୍ରଣତକୁ ନିଜର କରି ନେଇପାରିଲି ନାହିଁ, ତାକୁ ସୁଖୀ କରିପାରିଲି ନାହିଁ । ଜୀବନ୍ତ- ଦାହ ପରି ହୋଇଗଲା ତା' ଜୀବନ । ତାକୁ ପୋଡ଼ି ପୋଡ଼ି ମାରିଲି ମୁଁ !, ନିଜ ଅନ୍ତରେ ଦୁଃଖାଗ୍ନିରେ ମୁଁ ଯେତେବେଳେ ଦହି ହେଉଥାଏ ·· କେବେ ତାକୁ ମୁଁ ପାଖକୁ ଟାଣି ଆଣି ସାନ୍ତ୍ୱନା ଦେଇନାହିଁ—ଆଦର କରିନାହିଁ । ମୋ ପାଇଁ ଅବହେଳା ପାଇ ସେ ଅଭିମାନରେ ଚାଲିଗଲା କାଳିକରି ·

...ମୋ ନିକଟରୁ ଗୋପନ କରି ସେ ନିଜ ବୁକୁ ଭିତରେ ପାଳିଲା ଭୀଷଣ ରୋଗ ଯକ୍ଷ୍ମାର ବୀଜାଣୁ । ଦୁଇବର୍ଷ ହେଲା ତାକୁ ଏ ରୋଗ ଆକ୍ରମଣ କରିଥିଲା । କିନ୍ତୁ ମୁଁ ଜାଣି ପାରିନାହିଁ—ଅଥଚ ମୁଁ ତାର ସ୍ୱାମୀ !...ମୋ ପାଇଁ ସେ ମରଣକୁ ବରଣ କଲା । ଗଲାବେଳକୁ କଣ କହିଗଲା ଜାଣ ଆରତି ? କହିଲା, ତୁମେ ମୋ ପୁଅକୁ ପାଳିପାରିବ ନାହିଁ କାରଣ ତୁମର ପିତୃ-ହୃଦୟ ନାହିଁ । ଦିନେ ଯାହାଠାରୁ ତୁମକୁ ଛଡ଼ାଇ ଆଣି ତା'ର ଜୀବନ ବ୍ୟର୍ଥ କରିଦେଇଥିଲି, ଆଜି ତାହାକୁହିଁ ମୋର ପୁଅକୁ ଦେଇ ଯାଉଛି—ହୁଏତ ଏହି ଦାନରେ ମୋର ସେହି ପାପର ସାମାନ୍ୟ ପ୍ରାୟଶ୍ଚିତ ହୋଇପାରେ । ତୁମେ କଷ୍ଟ ଯାଇ ଆରତି ହାତରେ ମୋର ଶେଷଦାନ ଦେଇ ଆସିବ—"

ସୁରେଶର କଣ୍ଠ ରୁଦ୍ଧ ହୋଇଗଲା । କଣ୍ଠ ପରିଷ୍କାର କରି ଧୀରେ ଧୀରେ ପୁଣି ସେ କହିଲା, "ଆରତି—ତୁମେ କଣ ପ୍ରଣତିର ଶେଷଦାନ ଗ୍ରହଣ କରିବ ନାହିଁ ?"

ଅଶ୍ରୁସଜଳ ମୁହଁଟିକୁ ଉଠାଇ ଆରତି ଗାଢ଼ କଣ୍ଠରେ କହିଲା—"ଗ୍ରହଣ କରିବ ! ପ୍ରଣତିର ଶେଷଦାନକୁ ମୁଁ ମୁଣ୍ଡପାତି ଗ୍ରହଣ କରିବ—ଆଉ ତୁମେ ? ତୁମେ କେଉଁଠାକୁ ଯିବ ?"

ମ୍ଳାନ କଣ୍ଠରେ ସୁରେଶ କହିଲା, "ମୋର ଯଥେଷ୍ଟ ସ୍ଥାନ ଅଛି ରହିବାକୁ ଆରତି । ତୁମେ ଆଉ ବାଧା ଦିଅନାହିଁ, ଛାଡ଼ିଦିଅ ମତେ । ଅଜୀବନ ସନ୍ନ୍ୟାସୀ ହିସାବରେ ପରିଣତ କରିଛ ତୁମକୁ । ପ୍ରଣତିକୁ ହତ୍ୟା କରିଛି ମୁଁ-ଏ ଦୁଇଟା ପାପର ପ୍ରାୟଶ୍ଚିତ କରିବାକୁ ଦିଅ ମତେ ।"

ସ୍ୱର୍ଗୀୟ ଆଭାରେ ଆରତିର ମୁଖ ଉଦ୍ଭାସିତ ହୋଇ ଉଠିଲା ।

Digitized by srujanika@gmail.com

ମୃଦୁ ସ୍ୱରରେ ସେ କହିଲେ, "ମୁଁ ବାଧା ଦେବନି କିନ୍ତୁ ପୁଅ ମାଇଁ ତୁମକୁ ରହିବାକୁ ହେବ !" "ଅପାତତଃ ତୁମେ ତାକୁ ନିଜ ନିକଟରେ ବୁଝାଇ ରଖିବାକୁ ଚେଷ୍ଟାକର, ଆରତି । ମୁଁ ଅନ୍ତର ମୋର ଦୁର୍ବଳ ମନକୁ ସଂଯତ କରିପାରିନାହିଁ । ଯେଉଁଦିନ ତାହା କରିପାରିବି ସେ ଦିନ... ସେ ଦିନ ତୁମ ନିକଟକୁ ଆସି ଆଶ୍ରୟ ଭିକ୍ଷା କରିବି— ଆଶ୍ରୟ ମିଳିବ ତ ?" ସୁରେଶ ଏତିକି କହି କୌତୁକ ମିଶା ଗମ୍ଭୀର ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଆରତିର ମୁହଁକୁ ଚାହିଁଲେ ।

ନିଜର ପୂର୍ଣ୍ଣଦୃଷ୍ଟି ସୁରେଶର ଦୃଷ୍ଟି ଉପରେ ସ୍ଥାପନ କରି ଆରତି କହିଲା—"ନିଶ୍ଚୟ !!" ସୁରେଶ ଚୌକିରୁ ଉଠି କୋଡସ୍ଥିତ ବାଳକକୁ କହିଲେ, "ବାବୁ ! ଯା, ମାଙ୍କ ପାଖକୁ—" ବାଳକ ଦୁଇହାତରେ ପିତାଙ୍କ କଣ୍ଠ ବେଷ୍ଟନ କରି କହି ଉଠିଲା, "ନା—ଆ !" ସୁରେଶ ଆରତିର ଅତି ନିକଟକୁ ଆସି ଧୀରେ ଧୀରେ କହିଲେ, "ଆରତି ! ପୁଅ ଡରି ଯାଉଛି, ଟିକିଏ ବୁଝାଇ ସୁଝାଇ ତାକୁ ନେଇଯାଅ—"

ସ୍ୱପ୍ନୋତ୍ଥିତ ପରି ଆରତି ଠିଆ ହେଲା । ଆଜି ସେ ପ୍ରକୃତରେ ମା' ହୋଇ ପାରିଛି ଯେପରି । ଅନେକ ପ୍ରକାର ମନଭୁଲାଣିଆ କଥା କହି, ହାତ ଦୁଇଟା ବଢ଼ାଇ ଆରତି ଗ୍ରହଣ କଲା ପ୍ରିୟ-ସଖୀର ଶେଷ ଦାନ ।

ଆରତିର ନୟନରେ ଅଶ୍ରୁ ! ଅଧର କୋଣରେ ହାସ୍ୟ । କ୍ରନ୍ଦନ ଓ ହାସ୍ୟର ଅପୂର୍ବ ସମାବେଶ ହୋଇଛି ଆରତିର ମୁହଁଟିରେ । ଏତେ ସୁନ୍ଦର ବୋଧହୁଏ କେବେ ଦେଖି ନ ଥିଲେ ସୁରେଶ ।

Digitized by srujanika@gmail.com

ଘଡ଼ିଏକାଳ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଲା 'ସେ'। ଏହି ପ୍ରଥମରେ ବିନୋଦକୁ ମଧ୍ୟ ଭଲ ରୂପେ ନିରୀକ୍ଷଣ କଲା ସେ। ଅନ୍ତରର କନ୍ଦର ଚମକିଗଲା। ତାର '!...ବାଳକ ଓ ଆରତି 'ଯେପରି ଏକ ମୂର୍ତ୍ତି! ବିନୋଦ ଯେପରି ଆରତିର ଗର୍ଭରୁ ଜାତ ହୋଇଛି। ସେହିପରି ଆଖି ଦୁଇଟି ତାର—ଠିକ୍—ଠିକ୍ ସେହିପରି ଆଖି—ଏତେଦୂର ସାଦୃଶ୍ୟ ?

ବାଳକର ବାତ୍ସଲ୍ୟ ପରିପୂର୍ଣ୍ଣ ସୁନ୍ଦର ମୁହଁଟିକୁ ଚୁମ୍ବନରେ ଅଭିଷିକ୍ତ କରି ଆରତି, ଅତି ସହଜ ଭାବରେ କହିଲା—"ଯିବ ଘର ?"

ସୁରେଶର ଚମକ ଭାଙ୍ଗିଲା। ବିଦାୟ ସମ୍ଭାଷଣ ଜଣାଇ ଆଶ୍ରମର ବାହାରକୁ ବାହାରି ଆସିଲା ସେ। କିପରି ଗୋଟିଏ ଭାବରେ ଅଭିଭୂତ ହୋଇ ପଡ଼ିଛି ସେ।

ତା ପଛେ ପଛେ ଆରତି ବିନୋଦକୁ କୋଳରେ ଧରି ଆସୁଥିଲା— ଆନନ୍ଦରେ ତା ମନଟା ଭରପୂର। ଆଜି ସେ ପାଇଛି ସୁରେଶକୁ। ବାଳକର ଶରୀରର ପ୍ରତ୍ୟେକଟି ଅଂଶରେ ସେ ଦେଖୁଛି—ସୁରେଶର ସାଦୃଶ୍ୟ! ଯୁବକ ସୁରେଶକୁ ସେ ଧରି ପାରି ନ ଥିଲା, ଆଜି ବାଳକ-ବେଶୀ ସୁରେଶ ନିଜେ ଆସି ଧରା ଦେଇଛି ତା ନିକଟରେ। ଆଜି ସୁରେଶକୁ ସେ ଆପଣାର— ଅତି ଆପଣାର ରୂପେ ପାଇଛି।

ସୁରେଶ ଅଗ୍ରସର ହେଲା—ଆରତି ବାରଣ୍ଡା ଉପରେ ଠିଆ ହୋଇ ରହିଲା।

ଖଣ୍ଡେ ଦୂର ଚାଲିଲା ପରେ ସୁରେଶ ମୁହଁ ଫେରାଇଲା। ଆରତି

Digitized by srujanika@gmail.com

ଚାହିଁ ରହିଛନ୍ତି, ତାଙ୍କର ସେହି ଅପୂର୍ବ ଦୃଷ୍ଟି ନେଇ । ଆଜି ଶାୟିତ ନବୀନ୍ କ୍ଷୀଣପ୍ରାଣ ତା'ର ଆରତିର ବକ୍ଷ ଉପରେ ଥାଇ ଚାହିଁ ରହିଛନ୍ତି—ଅପଲକ ନେତ୍ରରେ—ଠିକ୍ ଆରତି ପରି ଦୃଷ୍ଟି ତା'ର ! !

ଏହି ଦୃଷ୍ଟିହିଁ ତା'କୁ ଫେରାଇ ଆଣିବ ତା'ର ଜନ୍ମଜନ୍ମାନ୍ତରର ପ୍ରିୟା ଆରତି ନିକଟକୁ ।



ସ—ମା—ପ୍ତି

କଟକ ଅମ୍ବିକା ପ୍ରେସରେ ଶ୍ରୀ ଚନ୍ଦ୍ରଶେଖର ମିଶ୍ର ବି. ଏ. ଙ୍କ
ଦ୍ୱାରା ମୁଦ୍ରିତ । —୧୯୫୪

Digitized by srujanika@gmail.com

ପ୍ରକାଶ ଅପେକ୍ଷାରେ—

ଲେଖିକାଙ୍କର ଅନ୍ୟାନ୍ୟ ବହି —

# ଝଡ଼ ( ଉପନ୍ୟାସ )

( କଳାହାଣ୍ଡି ବ୍ରଜମୋହନ ସାହିତ୍ୟ ସମିତିର ୧୯୬୮ ମସିହା ଉପନ୍ୟାସ ପ୍ରତିଯୋଗିତାରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା )

# ସୁରମା ( ଉପନ୍ୟାସ )

# ଉଚ୍ଛ୍ୱାସ ( ଗଳ୍ପ ସଂକଳନ )

ଅଦ୍ୱିତୀୟ ରୁଷ୍ ଲେଖକ 'ଡଷ୍ଟୟେଭ୍‌ସ୍କି'ଙ୍କର ବିଖ୍ୟାତ ଉପନ୍ୟାସ "କ୍ରାଇମ୍ ଏଣ୍ଡ ପନିଶ୍‌ମେଣ୍ଟ୍"ର

ଅନୁବାଦ

# "ପାପ ଓ ଶାସ୍ତି"

Digitized by srujanika@gmail.com